ସୁସ୍ମି ନମ୍ର ସ୍ୱରରେ ଜବାବ୍ ଦେଲା ଯେ, ସେ କଦାପି ଅପମାନ ଦେବାକୁ ଯାଇନାହିଁ ।

ହରଶଙ୍କର ପୂର୍ବପରି ଉତ୍ତେଜିତ କଣ୍ଠରେ କହିଲେ—ଆଉ ଅପମାନ କାହାକୁ କହନ୍ତି ଶୁଣେଁ ? ଗୋଟାଏ ସାମାନ୍ୟ ସ୍ନେହୋପହାର ଦେବାର କି ମୋର ଅଧିକାର ନାହିଁ ? ମୁଁ କି ତମ ପାଖରେ ଏତେ ଘୃଣ୍ୟ ?

ସୁଷମା ଉତ୍ତର ଦେଲା—ମୁଁ କଣ ତା କହୁଛି ?

ହରଶଙ୍କର କହିଲେ—ମୁହଁରେ କହି ନାହିଁ ସତ, କିନ୍ତୁ—ଏତକି କହି ସେ ଗୋଟାଏ ମର୍ମସ୍ପର୍ଶୀ ଗର ନିଶ୍ୱାସ ତ୍ୟାଗ କଲେ ।

ସୁଷି ନୀରବ ହୋଇ ଛିଡ଼ାହୋଇ ରହିଲା ।

ହରଶଙ୍କର ପୁନଶ୍ଚ କହିଲେ—ଲୋକର ଏତେଦୂର ଗର୍ବିତା ହେବା ଶୋଭା ପାଏ ନାହିଁ, ସୁଷମା !

କଥାଟା ସୁଷିର ମର୍ମରେ ତୀକ୍ଷ୍ଣଧାର ଖଡ଼୍ଗଫଳକ ପରି ବିଦ୍ଧ ହୋଇଗଲା । ଅବନତ ନେତ୍ରପ୍ରାନ୍ତରୁ ଅବାରିତ ଅଶ୍ରୁଧାରା ଝର ଝର ହୋଇ ଝରିବାକୁ ଲାଗିଲା । ହରଶଙ୍କର ତାହା ଲକ୍ଷ୍ୟ କଲେ । ଅଜ୍ଞାତି-ସାରରେ କି ରୂଢ଼କଥାଟା ତାଙ୍କ ତୁଣ୍ଡରୁ ବାହାରି ପଡ଼ିଛି—ତାହା ଭାବି ତାଙ୍କର ଅନ୍ତସ୍ଥଳ ଅନୁତାପରେ ପୂର୍ଣ୍ଣ ହୋଇଉଠିଲା । ଅଧିକାର ପ୍ରବଳ ଦାବାଗ୍ନି ପରି ହୃଦୟର ପ୍ରତ୍ୟେକ ଅନ୍ଧିସନ୍ଧିରେ ବ୍ୟାପିଗଲା । ସେ ଆଉ ଧୀର ସ୍ଥିର ହୋଇ ରହି ପାରିଲେ ନାହିଁ । କ୍ରନ୍ଦନାକୁଳା କୁମାରୀର କରୁଣମୂର୍ତ୍ତିଟି ପାଖକୁ ଯାଇ ସେ କୋମଳ କଣ୍ଠରେ କହିଲେ—ସୁସ୍ମି, ରାଗିଲ ? କଥା କହୁଁ କହୁଁ ଟିକିଏ କର୍କଶ ହୋଇପଡ଼ିଛି । ସେଟା ମୋର ବଡ଼ ଅନ୍ୟାୟ ହୋଇଛି । ତେବେ ତମ ଛଡ଼ା ମୋର ଅତ୍ୟାଗ୍ରହ ଆଉ କିଏ ସହ୍ୟ କରିବ, କହିଲ ସୁଷି ? ଛି, କାନ୍ଦ ନାହିଁ, ମୋ ରାଣ ।

ଏହା କହି ସେ ଲବଣ୍ୟମୟୀର ଚିବୁକଟି ଧରି ଗୋଟାଏ ଅଭାବନୀୟ କାଣ୍ଡ କରି ପକାଇବାକୁ ଯାଉଥିଲେ, ସୁଷି ପଛକୁ ଘୁଞ୍ଚିଗଲେ । ହରିଶଙ୍କର ମଧ୍ୟ ନିଜକୁ ନିୟନ୍ତ୍ରିତ କରିନେଲେ । ସୁବର୍ଣ୍ଣ ଅଙ୍ଗୁରୀୟଟା ସେପର୍ଯ୍ୟନ୍ତ ଅବହେଳିତ ହୋଇ ଭୂଇଁରେ ପଡ଼ି ରହିଥିଲା । ହରିଶଙ୍କର ତାହା ତଳୁ ଉଠାଇନେଇ ଅନ୍ୟାନ୍ୟ ଅଳଙ୍କାର ସହିତ ସେହି ପାର୍ସେଲ ବାକ୍ସଟାରେ ରଖିଲେ । ତା ପରେ ଟିକିଏ କ୍ଷୁବ୍ଧ କଣ୍ଠରେ କହିଲେ—ଏଗୁଡ଼ାକ ଏଠି ରହିଲା ସୁଷି, ମୁଁ ଯାଉଛି । ଏହା କହି ସେ ଉଠି ବାହାରିଯିବାକୁ ଉଦ୍ୟତ ହେଲେ । ସୁଷି ବିଦ୍ୟୁତ୍ ବେଗରେ ଛୁଟିଆସି ପାଦଦ୍ୱୟ ଜଡ଼ି ଧରିଲା । ହରିଶଙ୍କର ସ୍ତମ୍ଭିତ ହୋଇ କହିଲେ—ଏ କଣ, ସୁଷି, ଏ କଣ ?

ସୁଷି କହିଲା—ଯିବାଟା କିନ୍ତୁ ଅନ୍ୟାୟ ହେବ କହିଦେଉଛି ।

ହରିଶଙ୍କର ଆପଣାର ପାଦଦୁଇଟି ମୁକ୍ତ କରିନେଇ ସ୍ୱସ୍ଥାନରେ ବସି ପଡ଼ିଲେ ।

ସୁଷି କହିଲା—ମୋ ଉପରେ ବିରକ୍ତ ହେଲେ ?

ହରିଶଙ୍କର ତାର ଭାଷାଗତ ତ୍ରୁଟି ସଂଶୋଧନକରି ଉତ୍ତର ଦେଲେ—"ହେଲେ" ନୁହେଁ "ହେଲ" କହିବାକୁ ହେବ ।

ସୁଷି କହିଲା—ହେଉ ତାହାହିଁ ହେଲା । କିନ୍ତୁ ମୋର ଦୋଷ କଣ ?

ହରିଶଙ୍କର ଜବାବ ଦେଲେ—ଦୋଷ ଏଇ ଯେ ଅନ୍ତରର ଉଚ୍ଛ୍ୱସିତ ସ୍ନେହର ମୂଲ୍ୟ ବୁଝିଲ ନାହିଁ, ସୁଷି ।

ସୁଷି ନମ୍ରକଣ୍ଠରେ ପଚାରିଲା—ମୋ ପ୍ରତି ଯେ ତମର ସ୍ନେହ ନାହିଁ ମୁଁ କଣ ତା କହିଲି ।

ହରିଶଙ୍କର—ତେବେ ବାଧା ଦେଲ ଯେ ।

ସୁପ୍ତି—ବାପା ଦେବାଟା କଦାପି ମୋର ଅନ୍ୟାୟ ହୋଇନାହିଁ । ଏହା କହି ସେ ପଚାରିଲା—ସେଇଟା କି ବାକ୍ସ ? ଦେଖେଁ ।

ହରିଶଙ୍କର ବାକ୍ସଟା ତାର ହାତକୁ ବଢ଼ାଇ ଦେଇ ଅନ୍ୟ ପାଖକୁ ମୁହଁକରି ରହିଲେ । ସୁପ୍ତି ତାହା ଖୋଲି ଦେଖିବାକୁ ଆରମ୍ଭ କଲା । ଓଃ, ଏତେ ଗୁଡ଼ାଏ ସୁନାର ଜିନିଷ ! ଏସବୁ କଣ ତାହାରି ପାଇଁ କିଣା ହୋଇ ଆସିଛି । ଏହାର ଦାମ କେତେ ଟଙ୍କା ହୋଇ ନ ଥିବ ! ହରିଶଙ୍କର ଏ ମଧ୍ୟରେ ଏ କି କାଣ୍ଡ କରିବସିଛନ୍ତି ! ଏହା ଭାବି ସେ ବିସ୍ମୟରେ ଅଭିଭୂତ ହୋଇ ପଡ଼ିଲା । ତାର ଚକ୍ଷୁଦ୍ୱୟ ବିସ୍ଫାରିତ ହୋଇଉଠିଲା । ସେଦିନ ହରିଶଙ୍କର ତାର ଶୂନ୍ୟହସ୍ତ ଦେଖି ଯାହା କହିଥିଲେ ତାହା ତାର ମନେ ପଡ଼ିଲା । ସେ ମଧୁର ଭର୍ତ୍ସନାପୂର୍ଣ୍ଣ କଣ୍ଠରେ କହିଲା—ଏତେ କଥା କାହିଁକି କରିବାକୁ ଗଲ ଶୁଣେ ? ତା ଆଗରୁ ମୋତେ ଟିକେ ପଚାରିବା କି ଉଚିତ ନ ଥିଲା ?

ହରିଶଙ୍କର ଉତ୍ତର ଦେଲେ—ତା ପଚାରିବାର ଅଣୁମାତ୍ର ଆବଶ୍ୟକତା ସେ ବୋଧ କରି ନ ଥିଲେ । ଯେଉଁ ବିଷୟଟା ପୂରାପୂରି ତାଙ୍କର ଅଧିକାରଭୁକ୍ତ ସେଥିରେ ଅନ୍ୟର ଅନଧିକାର ହସ୍ତକ୍ଷେପକୁ ସେ ପସନ୍ଦ କରନ୍ତି ନାହିଁ । ଏହା କହି ସେ ପଚାରିଲେ—ସୁପ୍ତି, ତା ହେଲେ ମୁଁ ଯାହା ଦେବି ତାହା କି ତମେ ଗ୍ରହଣ କରିବ ନାହିଁ ?

ସୁପ୍ତି କହିଲା—ନିଶ୍ଚୟ କରିବ ।

ହରିଶଙ୍କର—କାହିଁ ଆଜି ତ କଲ ନାହିଁ । ମୁଁ ଯେ କେତେ ଶଢ଼ାକରି ଏ ସବୁ ଆଣିଥିଲି ତାହା ତମେ ଜାଣ କି ?

ସୁପ୍ତି କହିଲା—ହଁ ଜାଣେ, ତେବେ ଏତେ ବ୍ୟସ୍ତ କାହିଁକି ? ପରେ ଦେଲେ ହେବ ନାହିଁ ?

ହରଶଙ୍କର ଏହା ଶୁଣି ହସିଲେ—ଓହୋ, ତା ପାଇଁ ଗୋଟାଏ ଜ୍ୟୋତିଷ ଡକିବାକୁ ପଡ଼ିବ ପରା ! ଏହା କହି ସେ ଆହୁରି ହସିବାକୁ ଲାଗିଲେ । ଅବଶେଷରେ ଗାତ୍ରୋତ୍ଥାନ କରି କହିଲେ—ତାହାହେଲେ ଅପାତତଃ ଏ ଗୁଡ଼ାକ ଥାଉ, ମୁଁ ଆସେଁ ।

ସୁସ୍ମି କହିଲା—ଅଚ୍ଛା ଥାଉ ।

---

## ନବମ ପରିଚ୍ଛେଦ

ଦୁଇଦିନ ପରେ ହରଶଙ୍କର ଆସି କହିଲେ—ସୁସ୍ମି, ଅଣ୍ଟ ଯିବାକୁ ହେବ, ଶୀଘ୍ର ଶୀଘ୍ର ଆୟୋଜନ କର ।

ସୁସ୍ମି ଆଶ୍ଚର୍ଯ୍ୟ ହୋଇ ପଚାରିଲା—କୁଆଡ଼େ ?

ହରିଶଙ୍କର ଉତ୍ତର ଦେଲେ—ଘରକୁ ।

ସୁସ୍ମି—ତମ ଘରକୁ ?

ହରିଶଙ୍କର ଚତୁରତା ସହକାରେ ସେହି କଥାର ପୁନରାବୃତ୍ତି କରି ଜବାବ ଦେଲେ—ହଁ, ତମ ଘରକୁ ।

ସୁସ୍ମି—ଆଉ ଏଠି ?

ହରଶଙ୍କର—ଏଠି ଯାହାହେଉ ଗୋଟାଏ ବ୍ୟବସ୍ଥା କରାଯିବ । ସେଥିପାଇଁ ତମର ଚିନ୍ତିତ ହେବାର କାରଣ ନାହିଁ ।

କିନ୍ତୁ ସୁସ୍ମି ଏହା ଶୁଣି ବାସ୍ତବିକ ଚିନ୍ତିତ ହୋଇ ପଡ଼ିଲା । ହରିଶଙ୍କର ତା ଲକ୍ଷ୍ୟ କରି କହିଲେ—ଏତେ କଣ ଭାବୁଛ ?

ସୁସ୍ମି ଜବାବ ଦେଲା—ମୋର ଯିବାଟା କ ଉଚିତ ହେବ ?

ହରିଶଙ୍କର ଟିକିଏ ବିରକ୍ତ ହୋଇ କହିଲେ—ଅଲବତ୍ ହେବ । ଏ ସବୁ ବିଷୟ ନେଇ ତମର ମୁଣ୍ଡ ଘୁରାଇବାର ଦରକାର କଣ ?

ଏହାପରେ ହୃଷିର ଆଉ କୌଣସି ଆପତ୍ତି କରିବାକୁ ସାହସ ହେଲ ନାହିଁ । ସେ ମୌନ ହୋଇ ରହିଲା ।

ହରଶଙ୍କର ସେହିଦିନ ହୃଷିକୁ ସଙ୍ଗରେ ନେଇ ଗୃହାଭିମୁଖରେ ଯାତ୍ରା କଲେ । ତା ପୂର୍ବରୁ ସେ ଘରକୁ କୌଣସି ସମ୍ବାଦ ଦେଇ ନ ଥିଲେ । ହରଶଙ୍କରଙ୍କ ଅନ୍ୟାନ୍ୟ କାର୍ଯ୍ୟ ପରି ଏହି ଗୃହାଗମନ ବ୍ୟାପାରଟା ମଧ୍ୟ ଆକସ୍ମିକ । ଦିନକ ମଧ୍ୟରେ ପ୍ରସ୍ତାବ, ପୁଣି ସେହି ଦିନକ ମଧ୍ୟରେ ତାହାର କାର୍ଯ୍ୟରେ ପରିଣତି । ଘରକୁ ସମ୍ବାଦ ଦେବାକୁ ଆଉ ସମୟ କାହିଁ ? କୃଷ୍ଣମାଧବଙ୍କ ନିକଟକୁ ତାଙ୍କର ଶେଷ ପତ୍ର ଥିଲା ସେହି ବିବାହ ସମ୍ପର୍କୀୟ ପ୍ରସ୍ତାବ ନେଇ । ପତ୍ରରେ ସେ ଯାହା ଲେଖିଥିଲେ ସେଥିରେ ସମସ୍ତଙ୍କର ମନ ଫିକା ପଡ଼ିଯାଇଥିଲା । ହରଶଙ୍କର ସେଥିରେ ଅତି ସ୍ପଷ୍ଟାକ୍ଷରରେ ନାସ୍ତିବାଣୀ ଶୁଣାଇ ଦେଇଥିଲେ । ମା ରାଧାପ୍ରିୟାଙ୍କ ମନରେ ଦାରୁଣ କଷ୍ଟ ହୋଇଥିଲା । ଯୌତୁକ ଗ୍ରହଣରେ ଯଦିବା ଆପତ୍ତି ହେଲା, ସେଥିପାଇଁ ଏକାବେଳକେ ବିବାହ କରିବାକୁ ମନା କରିଦେବାଟା କି ସଙ୍ଗତ ? ଏହି ପ୍ରସଙ୍ଗ ନେଇ ରାଧାପ୍ରିୟା ଓ କୃଷ୍ଣମାଧବଙ୍କ ମଧ୍ୟରେ ଅନେକ ଆଲୋଚନା ହୋଇଥିଲା । କୃଷ୍ଣମାଧବ କହିଥିଲେ—ସେତିକି ସୃଷ୍ଟି ଛଡ଼ା କଥା ସବୁ ହରିର ! ପିଲାଟାର ଯେ କି ଢଙ୍ଗ ତା ମୁଁ ବୁଝିପାରେ ନାହିଁ, ନାନି । ଏତେ ପାଠ ପଢ଼ି ଶେଷରେ ଏହି ଫଳ ! ଧା'କୁହିଁ କହନ୍ତି ଛନପାଗଳ ହେବା । ରାଧାପ୍ରିୟା ମଧ୍ୟ କଳ୍ପନା କରି ନ ଥିଲେ ଯେ ପୁଅ ତାଙ୍କ ନିକଟରେ ବିବାହ କରିବାକୁ ପ୍ରତିଶ୍ରୁତି ଦେଇ ଶେଷରେ ଏପରି ହତାଶ କରିବ । ହରଶଙ୍କର କାହିଁକି ଯେ ପୁଣି ମତ ପରିବର୍ତ୍ତନ କଲେ ତାର କୌଣସି କାରଣ ସେ ଖୋଜି ପାଉ ନ ଥିଲେ । ରାଧାପ୍ରିୟାଙ୍କ ପ୍ରାଣରେ ଗଭୀର ଅବସାଦ ଦେଖାଦେଇଥିଲା ।

ସେଦନ ସନ୍ଧ୍ୟାହେବାକୁ ବେଶି ବିଳମ୍ବ ନାହିଁ । ସୁଧାପ୍ରିୟା ପ୍ରଦୋଷ ସ୍ନାନ ଅନ୍ୟ ଦନ ଅପେକ୍ଷା ଟିକିଏ ଆଗରୁ ସାରିଦେଇ ବସିଛନ୍ତି । ଦନସାର ତାହାଁଙ୍କ କେଜାଣି ମନଟା ଅସ୍ଥିର ହେଉଛି । ଛାତ ଉପରେ କୁଆଟାଏ ବସି ବରାବର କା-କା ହେଉଛି—ସତେ ଯେପରି କିଏ ଘରକୁ ଆସିବ ! କୃଷ୍ଣମାଧବ ଘରେ ନାହାନ୍ତି—କି ଗୋଟାଏ ଜମିଦାରୀ କାମରେ ସେ ଦୁଇଦନ ହେଲା ଗ୍ରାମାନ୍ତରକୁ ଯାଇଛନ୍ତି । ସୁଧାପ୍ରିୟା ଅବଶ୍ରାନ୍ତରବା କୁଆଟା ଉପରେ ବିରକ୍ତ ହୋଇ କହୁଛନ୍ତି—ବରାବର ରାଉ ରାଉ ହୋଇ ରଖିଦେଲା ନାହିଁ ଏଟା—କିଏ ଏମିତ ଆସିବାକୁ ଯାଉଛି ଯେ ତୁ ଏତେ କା-କା ହୋଇ ମରୁଛୁ ? ଠିକ ଏହି ସମୟରେ ଦାଣ୍ଡରେ ଗୋଟାଏ ମୋଟର ଆସି ଉପସ୍ଥିତ ହେଲା,—ହର୍ଣ୍ଣ ବାଜିଲା । ସୁଧାପ୍ରିୟା ମନେ ମନେ କହିଲେ—କିଏ ଆସିଲା ନା କଣ ? କ୍ଷଣକ ମଧ୍ୟରେ ଚାକରବାକରମାନଙ୍କର ବ୍ୟସ୍ତ କଳରବ ଶୁଣାଗଲା । ଗୁରୁବାରି ମା ଧାଇଁ ଆସି କହିଲା—ମା, ମା, ବାବୁ ଆସିଲେଣି ।

ସୁଧାପ୍ରିୟା ଅସ୍ତବ୍ୟସ୍ତ ହୋଇ ଧାଇଁ ଆସିଲେ । ହରଶଙ୍କର ମୋଟରରୁ ଓହ୍ଲାଇ ଗାଡ଼ିର ଦ୍ୱାର କପାଟ ଧରି ଛିଡ଼ା ହୋଇଛନ୍ତି । ଗୋଟିଏ ଲାବଣ୍ୟମୟୀ କିଶୋରୀମୂର୍ତ୍ତି ମୋଟର କୁକ୍ଷିଭିତରୁ ଆସ୍ତେ ଆସ୍ତେ ବାହାରି ଆସୁଛି । ସଙ୍ଗରେ ଜଣେ ପ୍ରୌଢ଼ା ସ୍ତ୍ରୀଲୋକ—ସମ୍ଭବତଃ ପରିଚାରିକା । କିଶୋରୀ ନିରାଭରଣା—ମାତ୍ର ଯୌବନର ଦୀପ୍ତିରେ ଶରୀର ଜ୍ୟୋତିର୍ମୟ । ମନେ ହେଉଛି—ଯେପରି ଅଙ୍ଗପ୍ରତ୍ୟଙ୍ଗ ଆଭରଣ ଆବଶ୍ୟକ କରେ ନାହିଁ । ସ୍ୱଭାବ ସୌନ୍ଦର୍ଯ୍ୟହିଁ ତାର ଯଥେଷ୍ଟ ଆଭରଣ ।

ସୁଧାପ୍ରିୟା କିଛିକ୍ଷଣ ପାଇଁ ଅବାକ୍ ହୋଇ ଛିଡ଼ାହୋଇ ରହିଲେ । ନିତାନ୍ତ ଅପ୍ରତ୍ୟାଶିତ ଘଟଣାର ସମ୍ମୁଖୀନ ହେଲେ ମନୁଷ୍ୟ

ପ୍ରାୟ ହତବୁଦ୍ଧି ହୋଇଯାଏ । ତାଙ୍କର ତାହାହିଁ ହେଲା । ହରଶଙ୍କର ଆସି ପାଦମୂଳରେ ପ୍ରଣାମ କଲେ । ମା ତାଙ୍କୁ ତଳୁ ଉଠାଇ ଚିର-ଲଦ୍ୱେପ୍ସିତ ଝାଡ଼ିଦେବାକୁ ବି ଭୁଲିଗଲେ । ହରଶଙ୍କର ଏହାର କାରଣ ବୁଝିପାରିଲେ । ହସ ହସ ମୁଖରେ କହିଲେ—ମା, ଆଜ ଅବାକ୍ ହୋଇ ଯାଇଛୁ ପରା ? ସର୍ବାପ୍ରିୟାଙ୍କର ଏତେବେଳେ ଚେତନା ହେଲା । ସେ କହିଲେ—"ହବାର ତ କଥା ବାବା; ଚିଠି ନାହିଁ, ପତ୍ର ନାହିଁ, କୌଣସି ଖବର ନାହିଁ । ଏମିତ ଭୋଳାମହେଶ କିଏ ଅଛି କହିଲୁ ଶୁଣେ ।" ଏହା କହି ସେ ଏତେବେଳକେ ମୁଣ୍ଡର ଧୂଳି ଝାଡ଼ି ଦେବାକୁ ଗଲେ । ଏହି ସମୟରେ ଝିଅଟି ଆସି ତାଙ୍କ ପାଦତଳେ ପ୍ରଣାମ କଲା । ହରିଶଙ୍କର ଟିକିଏ ଘୁଞ୍ଚିଯାଇ ଠିଆ ହେଲେ । ମା ଝିଅର ହାତଧରି ତଳୁ ଉଠାଇଲେ । ଅପରିଚିତାର ପରିଚୟ ପାଇବା ପାଇଁ ମନରେ ଗଭୀର ଉତ୍କଣ୍ଠା ଜାତ ହେଉଥିଲେ ସୁଦ୍ଧା, ସେ କୌତୂହଳ ନିବୃତ୍ତିପାଇଁ ସେଇଟା ଉପଯୁକ୍ତ ସମୟ ନୁହେଁ ବୋଲି ଭାବି କେବଳ ପଚାରିଲେ—ତୋ ନାଁ କଣ ମା ?

ଝିଅଟି ଉତ୍ତର ଦେଲା—ମୋ ନାଁ ସୁଷମା ।

ସର୍ବାପ୍ରିୟା କହିଲେ—ସୁଷମା ! ବେଶ୍ ନାଁଟି ତ । ହଉ ମା, ଘର ଭିତରକୁ ଚାଲ । ଏହା କହି ସେ ସୁଷମାର ହାତ ଧରି ଘର ଭିତରକୁ ନେଇଗଲେ ।

ପ୍ରକାଣ୍ଡ ଘରଟା ଦେଖି ସୁଷମାର ମନରେ ଟିକିଏ ଯେମିତି ଭୀତ ସଞ୍ଚାର ହେଲା । ଏତେ ବଡ଼ ଘର ସେ ଜନ୍ମରୁ କେବେ ଦେଖି ନ ଥିଲା । ଗଳ୍ପ-କାହାଣୀରେ ଅବଶ୍ୟ ସେ ରଜାଘରର କଥା ଶୁଣିଥିଲା,—ଅପରିମିତ ଧନଦୌଲତର ବିଷୟ ଜାଣିଥିଲା । ମାତ୍ର ଦୁଇ ଆଖିରେ କେବେ ସେ ତାହା ଦେଖି ନ ଥିଲା । ପଲ୍ଲୀଗ୍ରାମର ନିରାଡ଼ମ୍ବର

ପର୍ଣ୍ଣକୁଟୀରରେ ସେ ଅଭାବଲାଳିତା । ସୌଭାଗ୍ୟର ଗର୍ବ ତାକୁ ସ୍ପର୍ଶ କରିବା ଦୂରେ ଥାଉ, ତାର ଛାୟା ପର୍ଯ୍ୟନ୍ତ ମାଡ଼ି ନ ଥିଲା । ସେହି ଦରିଦ୍ର ଭବନରେ ଅବଶ୍ୟ ସ୍ନେହମାୟାର ଅଭାବ ନ ଥିଲା, ବରଂ ତାହା ପୂର୍ଣ୍ଣମାତ୍ରାରେ ବିଦ୍ୟମାନ ଥିଲା । ମାତ୍ର ସେଥିରେ ନ ଥିଲା ବିଭବର ବାହ୍ୟିକ ଦୀପ୍ତି,—ଧନର ଏ ଭୀତିପ୍ରଦ ଆତ୍ମପ୍ରକାଶ । ସୁଷମା ଏ ସବୁ ଦେଖି ଟିକିଏ ଯେପରି କାତର ହୋଇପଡ଼ିଲା ।

ସନ୍ଧ୍ୟାକାଳୀନ ଘଣ୍ଟାଧ୍ୱନି ଗୃହସଂଲଗ୍ନ ଦେବାଳୟରେ ବାଜି ଉଠିଲା । ରାଧାପ୍ରିୟା ସୁଷିକୁ ଗୋଟାଏ ପ୍ରଶସ୍ତ କକ୍ଷରେ ବସାଇଦେଇ ଆରତି ଦର୍ଶନ କରିବା ପାଇଁ ଚାଲିଗଲେ । ବାଉଳିମାକୁ ହରଶଙ୍କର ସଙ୍ଗରେ ନେଇ ଆସିଥିଲେ । ସେ ଏଣେ ତେଣେ ବୁଲି ଏହି ଧନୀ-ଗୃହର ବିପୁଳ ବିଭବ ଦର୍ଶନ କରିବାରେ ଲାଗିଲା । ସୁଷି ନୀରବରେ ବସି କେତେ କଣ ଭାବିବାକୁ ଲାଗିଲା । ପିଲାଦିନରୁ ଆରମ୍ଭ କରି ଏପର୍ଯ୍ୟନ୍ତ ତା ଜୀବନରେ ଯେତେ ଯେତେ ଘଟଣା ଘଟିଯାଇଛି, ସବୁ ଗୋଟି ଗୋଟି ହୋଇ ତାର ମନେ ପଡ଼ିବାକୁ ଲାଗିଲା । ପିତାଙ୍କର ବିଷୟ ତାର ଅବଶ୍ୟ ବେଶି କିଛି ମନେ ନାହିଁ । ତାଙ୍କର ପରଲୋକ ହେବାବେଳକୁ ସେ ନିତାନ୍ତ ଅଳ୍ପବୟସ୍କା । କିନ୍ତୁ ମାଆର କଥା ତାର ସୁସ୍ପଷ୍ଟଭାବରେ ମନେ ପଡ଼ିବାକୁ ଲାଗିଲା । ସୌଦାମିନୀର ସ୍ନେହମୟ ମୂର୍ତ୍ତି ତା ଆଖି ଆଗରେ ନାଚି ବୁଲିଲା । ମାଆର ମଧୁରଗଳା, ମଧୁରତର 'ସୁଷି' ସମ୍ବୋଧନ ତା କାନରେ ଯେପରି ଅନବରତ ବାଜିବାକୁ ଲାଗିଲା । ସୌଦାମିନୀ ଯେତେବେଳେ ଯେଉଁ କାର୍ଯ୍ୟ କରନ୍ତି ତାହା ଯେପରି ଗୋଟି ଗୋଟି ହୋଇ ଦିଶିଗଲା । ଏହି ସନ୍ଧ୍ୟା ସମୟରେ ସେ କିପରି ବୃନ୍ଦାବତୀମୂଳରେ ବସି ଘଣ୍ଟା ଘଣ୍ଟା ଧରି ତୁଳସୀ ଆରାଧନା କରନ୍ତି ସେ ଚିତ୍ର ତା ଚକ୍ଷୁ ସମକ୍ଷରେ ଉଦ୍ଭାସିତ ହୋଇ ଉଠିଲା । ତା ପରେ ସେହି ଭୀଷଣ ବନ୍ୟା, ସେହି ରୋଗଶଯ୍ୟାର

କରୁଣ ଦୃଶ୍ୟ, ହରଶଙ୍କରଙ୍କ ଆବିର୍ଭାବ, ତାଙ୍କ ସହିତ ପରିଚୟ, ବନ୍ଧୁତ୍ୱ, ଗୃହତ୍ୟାଗ ଏବଂ ଅବଶେଷରେ ଏହି ଧନୀ ସଂସାରରେ ଆଶ୍ରୟ—ଏ ସମସ୍ତ ଘଟଣା ସୁଷିର ମନୋମୁକୁରରେ ମୁହୂର୍ତ୍ତିକ ମଧ୍ୟରେ ପ୍ରତିଫଳିତ ହୋଇଗଲା । ଓହୋ, ତାର ଜୀବନର ସ୍ରୋତ ତାକୁ ଦୁରନ୍ତ ବେଗରେ ଉଠାଇ ନେଇ କୁଆଡ଼େ ଗ୍ଲଲଛି ! ସାମାନ୍ୟ ତୃଣ ଖଣ୍ଡପରି ସେ ଭାସି ଭାସି କୁଆଡ଼େ ଯାଉଛି । ତା ଭାବି ଭାବି ସୁଷି ଶ୍ରାନ୍ତ, ଅବସନ୍ନ ହୋଇପଡ଼ିଲା । ତାର ଅଜ୍ଞାତସାରରେ ଦୁଇବିନ୍ଦୁ ଲୋତକ ଚକ୍ଷୁପ୍ରାନ୍ତରୁ ଝରିପଡ଼ିଲା । ମନ୍ଦିରର ଘଣ୍ଟାଧ୍ୱନି ବନ୍ଦ ହୋଇଗଲା । ସୁଷିର ଧ୍ୟାନ ମଧ୍ୟ ଭାଙ୍ଗିଗଲା । ଉଦାସ ନେତ୍ରରେ ସେ ବାହାରର ନିବିଡ଼ ଅନ୍ଧକାର ଆଡ଼କୁ ଗ୍ଲହିଁ ରହିଲା ।

---

## ଦଶମ ପରିଚ୍ଛେଦ

ସୁଷିର ଇତିହାସ ଜାଣିବା ପାଇଁ ମା ରାଧାପ୍ରିୟାଙ୍କ ମନରେ କୌତୂହଳ ପ୍ରବଳରୁ ପ୍ରବଳତର ହେବାକୁ ଲାଗିଲା । ବାଳକଟି କିଏ, କାହାର ସନ୍ତାନ, କି ଜାତି, ହରଶଙ୍କରଙ୍କର ତା ସହିତ କିପରି ପରିଚୟ ହେଲା—ଏହି ସବୁ ବିଷୟ ଜାଣିବାପାଇଁ ତାଙ୍କର ଅସୀମ ଆଗ୍ରହ ଜାତ ହେଲା । ମାତ୍ର କାହାକୁ ପଗ୍ଲରି ସେ ଏ ସବୁ ହାଲ ବୁଝିବେ ? ରାଧାପ୍ରିୟା ଅନେକ ଭାବଚିନ୍ତି ସ୍ଥିର କଲେ ହରଶଙ୍କର ବା ସୁଷମାଠାରୁ ଏ ସବୁ ତଥ୍ୟ ପ୍ରତ୍ୟକ୍ଷରେ ସଂଗ୍ରହ କରିବା ଅପେକ୍ଷା ବାଉଳିମାଠାରୁ ସମସ୍ତ କଥା ଜାଣିବା ସମୀଚୀନ ହେବ । ତେଣୁ ସେ ସମୟ ଉକ୍ତି ନିଦବେଳରେ ତାହାରିଠାରୁ ସୁଷିର ଇତିହାସ ସଂଗ୍ରହ କରିବାରେ ପ୍ରବୃତ୍ତ ହେଲେ । ହଠାତ୍ ସେ ସୁଷମାର କଥା ନ ପଗ୍ଲରି ବାଉଳିମାଆର ନିଜର କଥା ଆରମ୍ଭ କରିଦେଲେ । ବାଉଳିମାଆର

ସଂସାରରେ ଆଉ କିଏ ଅଛି, ସେ କିପରି ଚଳେ, କେତେଦିନରୁ ସେ ଏଠି ସୁଷମା ପାଖରେ ରହୁଛି ଇତ୍ୟାଦି ବିଷୟରୁ ସେ କ୍ରମେ କ୍ରମେ ସୁଷମା ସମ୍ବନ୍ଧୀୟ ସମସ୍ତ ବିବରଣ ଜାଣିବାକୁ ଚେଷ୍ଟା କଲେ । ସଧାପ୍ରିୟା ସୁଷମାର ସ୍ୱଭାବ ଚରିତ୍ର ଗୁଣଗ୍ରାମ କଥା ବିଶେଷଭାବରେ ପଚାରି ବୁଝିନେଲେ । କାହାର ସହିତ ତାର ବିବାହ ପ୍ରସଙ୍ଗ କେବେ ଉଠିଛି କି ନା ତା ମଧ୍ୟ ପଚାରିବାକୁ ଛାଡ଼ିଲେ ନାହିଁ । ବାଉଳମା କହିଲା—ତା ତ ମୁଁ କିଛି ଶୁଣି ନାହିଁ ମା । ସେମିତି କିଛି କଥା ଉଠିଥିଲେ ତା କଣ ଆଉ ମୋତେ ଅଛପା ଥାନ୍ତା ? କିଏ ବା ସେ ସବୁ ଯୋଗାଡ଼ କରିବ ? ବାପ ତ ନାହିଁ,—ବାପ ବଦଳରେ ଆଉ ଯେ ସେପରି କେହି ମୁରବି ଅଛି ତା ବି ନୁହେଁ,—ଘରକୁ ମା ଝିଅ ବୋଲି ଦୁଇପ୍ରାଣୀ,—ମାଆଟି ଯାହା କରିବ ସେୟା । ହେଲେ, ମାଇକିନା ଲୋକ ! ତାର ଶକ୍ୟ କେତେ ? ମାଇପି ଲୋକଙ୍କ ଯୋଗେ କଣ ଏ ସବୁ ଗହନ କଥା ହୋଇପାରେ ମା ? ମର୍ଦ୍ଦଲୋକେ ପାଞ୍ଚଆଡ଼େ ବୁଲି, ପାଞ୍ଚଜାଗା ଆଖି ପେରେଇ, ଦେଖି ଚାହିଁ ସିନା ଏସବୁ କଥା ନେଇ ଆଣି ଥୁଅନ୍ତି ! ଆଉ ସେମିତି ଯୋଗାଡ଼ଯନ୍ତ୍ର କରିବାକୁ କିଏ ଅଛି ? ଯାହା ବି ମାଆଟି ଥିଲା,—ସେ କଣ ବଞ୍ଚିଲା ? ଦଇବ ତ ତାକୁ ଅଚମ୍ବିତରେ ଛଞ୍ଚାଣପରି ଏ ସଂସାରରୁ ଛୋଁ ମାରିନେଲା । ଆଉ ରହିଲା କିଏ ? ତେବେ ଏହି କଣ କି, ଝିଅଟିର କପାଳ ଗୁଣକୁ ବାବୁ ଯାଇ ଜୁଟିଲେ,—ଅରକ୍ଷିତକୁ ସାହା ହେଲେ । ଖୁବ୍, କରୁଛନ୍ତି ମା, ବାବୁ ଖୁବ୍ କରିଛନ୍ତି । ଏମିତି କେତେଠା ଲୋକ କରନ୍ତି ? ଏ କାଳରେ ତମେ ମରି ଦରିଆରେ ଭାସି ଯାଉଥିଲେ ଲୋକେ ଆଡ଼ନୟନରେ ବି ଚାହିଁବେ ନାହିଁ ! ମରି ମାଟି ହୋଇ ଯାଉଥିଲେ ବି "ଆହା" ବୋଲି କହିବେ ନାହିଁ ! ଏକାଳକୁ ସେ ଯା କରୁଛନ୍ତି ତା କମ୍ କଥା ନୁହେ ମା । ଖାଲି ସଉଦାଅଣାର ଜିମ୍ମାରେ ତ ଗହଗହ ଟଙ୍କା ଫେଲି ଦେଉଛନ୍ତି,

ଅଉ କଥା ତେଣିକି ଥାଉ । କୋଉଁ ଅପଣାର ଲୋକଟା ଏତେ କରନ୍ତା କୁହନି ? ମୁଁ କହେଁ—ବାବୁ ତ ମଣିଷ ନୁହନ୍ତି—ଦେବତା । ସେ ଦିନ ମୋ ଛିଣ୍ଡା ଲୁଗା ଖଣ୍ଡିକ ଉପରେ ଆଖି ପଡ଼ିଗଲା । ବାବୁ ଦେଖିପକେଇ କହିଲେ "ତୋର କଣ ଲୁଗାପଟା ନାହିଁ କିରେ ବାଉଳମା ? ମୋତେ କହୁ ନାହୁଁ ?" ମୋତେତ ସାତ ପରବତ ଲାଜ ମାଡ଼ିଲା ମା । ମୁଁ ଯାଏଁ କୁଆଡ଼େ ? ତା ଆରଦିନ ଦେଖିଲି ବେଳକୁ ବାବୁ ଗୋଟାଏ ଦଶହାତୀ କନ୍ୟାଲୁଗା ମୋ ଲାଗି ପଠାଇ ଦେଇଚନ୍ତି । ଏଇ ପଟା ମା, ଏଇ ପିନ୍ଧିଛି ! ଏମିତ ଦୟା ତାଙ୍କର ! ସେ ପରି ଲୋକ ନ ଥିଲେ ଏତେ ଗାଁ ଗଣ୍ଡା ଯେ ନଈବଢ଼ିରେ ଭାସିଗଲା, ଲୋକେ ଯେ ଏତେ ହାନିଷ୍ଟା କଦର୍ଥ ନ ହେଲେ, ସେ ଦାଉ ସମ୍ଭାଳି ଥାନ୍ତା କିଏ ? ଦିନ ନାହିଁ, ରାତ ନାହିଁ, ବଣ ନାହିଁ, ଜଙ୍ଗଲ ନାହିଁ, ଘୂରିଆଡ଼େ ବୁଲି, ଦେଖି, ଲୋକଙ୍କ ତୁଣ୍ଡରେ ଅହାର ଦେଇ ପିଣ୍ଡରେ ପ୍ରାଣ ରଖିଦେଲେ ପରା ! ସେ କଥାଗୁଡ଼ାକ କେତେ କହିବି ମା, ତା କିଏ ନ ଜାଣେ ?

ବାଉଳମା ଅନର୍ଗଳ ଏହିପରି ବକିଯିବାକୁ ଲାଗିଲା । ରାଧାପ୍ରିୟାଙ୍କ ହୃଦୟ ଗର୍ବରେ ଫୁଲି ଉଠିଲା । କିନ୍ତୁ ସେ ଭାବ ସେ ବାହାରକୁ ପ୍ରକାଶ ନ କରି ପଚାରିଲେ—"ଅଚ୍ଛା ବାଉଳମା, ହର ଯେ ଏ ଅରକ୍ଷିତ ପିଲାଟିର ଏମିତ ସାହା ଭରସା ହେଲା,—ଆପଣାର ହୋଇ ଏତେ କଥା କଲା, ଏଥିରେ କେହି କିଛି ଦୁର୍ନାମ କହିନାହାନ୍ତି ତ ?" ବାଉଳମା କହିଲା—କି, ଦୁର୍ନାମ କାହିଁକି କରିବେ ? ବାବୁ କି ଦୋଷ କଥାଟା କଲେ କି ଏମିତ ? ଦୁଃଖୀରଙ୍କିଙ୍କ ସାହାଭରସା ହେବା କଣ ଏଡ଼େ ହୀନ କାମ ? ତେବେ, ବୁଝିଲ ନାହିଁ ମା, ଏ କଳିକାଳରେ କିଏ କାହା ଭଲ୍ପରେ ହାତ ଦେବ କୁହନି ? ଏ ଯୁଗରେ କୁଆଟା ଉଡ଼ିଗଲେ, କହିନା କୁଆ ଉଡ଼ିଗଲା । ହେଲେ ସେ ସବୁ କଥାରେ

କଣ ଅଛି ? ସେମିତି ଯେ କହୁଥିବ, କହୁଥାଉ । ତା ତୁଣ୍ଡରେ ପାଉଁଶ ପଡ଼ୁ । ମୁଁ ତ କହୁଛି ମା, ସେମିତି ଢଙ୍ଗ ମୁଁ ବାବୁଙ୍କର କେବେ ଦେଖି ନାହିଁ । ମିଛ କଥାଟା କାହିଁକି କହିବ, ସେଥିରୁ କି ପୁଣ୍ୟ ମିଳିବ କି ? ଆଉ ସୁନ୍ଦି, ସେ ବି ସେ ଭଳି ଝିଅ ନୁହେଁ ମା । ବିଚାରୀର କପାଳରେ ସିନା ଥିଲା, ବାପମା ଛେଉଣ୍ଡ ହେଲା । ହେଲେ ତାକୁ ଉଦଣ୍ଡୀ ବୋଲି କେହି କହିବ ନା ? ଜିଭ ଛିଣ୍ଡି ପଡ଼ିବ, ମା, ଜିଭ ଛିଣ୍ଡି ପଡ଼ିବ ।

ଏହା କହି ବାଉଳିମା ସୁଧାପ୍ରିୟାଙ୍କ ଗୋଡ ଦଇଟା ଟାଣିନେଇ ଘଷିବାକୁ ଆରମ୍ଭ କରିଦେଲା । ସୁଧାପ୍ରିୟା ଏଥର ସମସ୍ତ ଘଟଣା ବୁଝିପାରିଲେ । ଅସହାୟା ବାଳିକାକୁ ସାହାଯ୍ୟ କରି ହରଶଙ୍କର ଯେ ପୁଣ୍ୟକାର୍ଯ୍ୟ କରିଛନ୍ତି, ଏଥିରେ ତାଙ୍କର ସନ୍ଦେହ ରହିଲା ନାହିଁ । ହଜାରେ ପାଗଳାମି ଥାଉ ପଛକେ, ଦୁଃଖୀ ରଙ୍କଙ୍କ ପ୍ରତି ହରିର ଯେ ଦୟା ଥାଏ, ଏହା କେହି ଅସ୍ୱୀକାର କରି ପାରିବ ନାହିଁ, —ଏହାହିଁ ମନେ ମନେ କହିବାକୁ ଲାଗିଲେ । ତେବେ ଏ ଦୋଷଦର୍ଶୀ ଦୁନିଆଟାରେ ଲୋକ ମିଛରେ ହେଲେ ଦୋଷ ଦେଖିଥାଏ—ଅପବାଦ ଦେଇଥାଏ । ଯେତେ ବଡ଼ ଦେବସ୍ୱଭାବର ଲୋକ ହେଉ ପଛକେ ତା ନାଁରେ ଟିକିଏ କଳଙ୍କ ଲେପି ପାରିଲେ ମନୁଷ୍ୟ ପ୍ରକୃତି ଆତ୍ମପ୍ରସାଦ ଲାଭ କରିଥାଏ । ଏହା ଭାବି ସେ ଟିକିଏ ଆଶଙ୍କାପ୍ରବଣ ହୋଇ ପଡ଼ିଥିଲେ । ମାତ୍ର ସେ ଭାରି ଖୁସି ହୋଇଥିଲେ ଯେ, ହରଶଙ୍କର ସୁଷମାକୁ ଘରକୁ ନେଇଆସି ବୁଦ୍ଧିମାନର କାର୍ଯ୍ୟ କରିଛନ୍ତି—ଜନାପବାଦର ରାସ୍ତା ଅନେକ ପରିମାଣରେ ବନ୍ଦ କରି ଦେଇଛନ୍ତି । ସୁଷମାକୁ ଦେଖିଲା ବେଳୁ ନିଜ ହୃଦୟରେ ବି କାହିଁକି କେଜାଣି ସେ ଟିକିଏ ଆକର୍ଷଣ ଅନୁଭବ କରୁଥିଲେ । ସୁଧାପ୍ରିୟାଙ୍କର ଦୁଇଟି କନ୍ୟା ହୋଇ ଶୈଶବାବସ୍ଥାରେ ନଷ୍ଟ ହୋଇଯାଇଥିଲେ । କନ୍ୟାବାତ୍ସଲ୍ୟ ତାଙ୍କ ପ୍ରାଣରେ କଳାଢାର

ଯୌବନ ପରେ ରୁଦ୍ଧ ହୋଇ ରହିଥିଲା,—ଅନୁପ୍ରକାଶ କରିବାକୁ ସୁଯୋଗ ପାଉ ନ ଥିଲା । ବର୍ତ୍ତମାନ ସୁଷମାର ଆବିର୍ଭାବରେ ତାହା ବେପରି ବାହାରକୁ ବାହାରି ପଡ଼ିବାକୁ ଇଚ୍ଛା କରୁଥିଲା । ରାଧାପ୍ରିୟା ଭାବୁଥିଲେ—ସୁଷମା ଯଦି ତାଙ୍କର ସ୍ୱଜାତି ହୋଇଥାନ୍ତା, ସେ ବଂଶମର୍ଯ୍ୟାଦାକୁ ଦୂରକୁ ଫିଙ୍ଗି ଦେଇ, ସେହି ଦରିଦ୍ରା ନିଃସହାୟା ବାଳିକାକୁ ଯୁଗପତ୍ କନ୍ୟା ଓ ପୁତ୍ରବଧୂର ଆସନରେ ବସାଇଦେଇ ତୃପ୍ତିଲାଭ କରନ୍ତେ । ମାତ୍ର ତାହା ଯେ ଅସମ୍ଭବ । ସୁଷମା ଯେ ସ୍ୱଜାତିଭୁକ୍ତା ନୁହେ । ଯାହାଙ୍କ ବଂଶ ଯେ ଉତ୍କଳଖଣ୍ଡର ଏକ ପୁରାତନ ପ୍ରସିଦ୍ଧ ବ୍ରାହ୍ମଣବଂଶ ବୋଲି ଗର୍ବ ଅନୁଭବ କରେ, ଆଉ ସୁଷମା ଯେ ଖଣ୍ଡାଏତକୁଳର କନ୍ୟା !

ରାଧାପ୍ରିୟା ମନେ ମନେ କହିଲେ—ଯାଉ, ସେ ସବୁ କଥା ଭାବି ଲାଭ କଣ । ବର୍ତ୍ତମାନ ସମସ୍ୟା ହେଉଛି—ସୁଷମାକୁ ଯେତେବେଳେ ତାଙ୍କ ଗୃହରେ ଆଶ୍ରୟ ଦିଆଯାଇଛି, ତାର କି ବ୍ୟବସ୍ଥା କରିବାକୁ ହେବ ? ଗୃହଯୋଗ୍ୟା କୁମାରୀକୁ ଘରେ ରଖି ତ ଆଉ ଚିରକାଳ ନିଶ୍ଚିନ୍ତ ହୋଇ ରହି ହେବ ନାହିଁ । ତାର ଭବିଷ୍ୟତ କଥା ନିଶ୍ଚୟ ଭାବିବାକୁ ହେବ । ସତ୍ପାତ୍ର ଦେଖି ତାର ଗୋଟାଏ କିନାରା କରିଦେବାକୁ ହେବ,—ଅର୍ଥାତ ତାର ସଂସାରଟି ଗଢ଼ିଦେବାକୁ ହେବ ।

ରାଧାପ୍ରିୟା ଏହିପରି ସୁଷମାର କଥା ଭାବୁଁ ଭାବୁଁ, ପୁତ୍ର ହରିଶଙ୍କରଙ୍କ ବିବାହ ଚିନ୍ତା କୌଣସି କାରଣ ମନରୁ ଏଡ଼ି ପାରିଲେ ନାହିଁ । ସେ ଭାବିଲେ—ସୁଷମାର ବିବାହ ତ ଦୂରର କଥା । ତା ଆଗରୁ ହରିଶଙ୍କରର ବିବାହ ସମାପନ ହେବା ତ ଦରକାର । ଏତେ ବଡ଼ ସୁଯୋଗ୍ୟ କୁଳନନ୍ଦନ ଅବିବାହିତ ଥାଇଁ ଆଉ ...ଙ୍କର

ବିବାହ କଥା ଭାବେ ? କିନ୍ତୁ ହରିଶଙ୍କର ସେ ଏକ ଦୁରୂହ ସମସ୍ୟା ହୋଇ ଛିଡ଼ା ହେଲେଣି । କେତେବେଳେ କହୁଛନ୍ତି ବିଭା ହେବି, କେତେବେଳେ କହୁଛନ୍ତି ହେବି ନାହିଁ । ଘଡ଼ିକେ ଘୋଡ଼ା ଛୁଟୁଛି । କେତେ କଷ୍ଟରେ ବୁଝାଇ ସମଝାଇ ଜବାବ ପାଇଥିଲି—ହଁ ବିଭା ହେବି । ପାନୀ ଯୋଗାଡ଼ ହେଲା,—ଗୋଟାଏ ନୁହେଁ, ଦୁଇ ଦୁଇଟା । ପୁଣି ଲକ୍ଷ୍ମୀ ପାନୀ । ଯେମିତି ଘରକୁ ସେମିତି ନାମ୍ । ଦେବାନେବାରେ ବି ଊଣା କରି ନ ଥାନ୍ତେ । ହେଲେ କଣ ହେବ ? ସବୁ ପସର ପାଟିଗଲା । ପୁଅ ଜିଦ୍ ଧରିବସିଲା—ମୁଁ ବିଭା ହେବି ନାହିଁ, ଏଥିକୁ ବଳ କାହାର ?

ଗାର୍ଗୀପ୍ରିୟା ଏହି ସବୁ କଥା ଭାବି ଭାବି କି ଉପାୟ କରିବେ କିଛି ସ୍ଥିର କରି ପାରିଲେ ନାହିଁ । ହାୟ ହାୟ ! ହରିଶଙ୍କର ବିଭା ହୋଇଥିଲେ, ଏତେବେଳକୁ ସେ ପୁଅଟେ କି ଝିଅଟା ନାତି ନାତୁଣୀର ମୁହଁ ଦେଖନ୍ତେଣି । କିନ୍ତୁ ବିଧାତା କି ପାଗଳାମି ତା ମୁଣ୍ଡରେ ଦେଲେ !

ବାଉଳିମା ଏଥି ମଧ୍ୟରେ ଗୋଡ଼ ଦିଟା ଘସି ଘସି ଲାଲ କରିଦେଲଣି । ଗାର୍ଗୀପ୍ରିୟା କହିଲେ—ଥାଉ ଲୋ ବାଉଳିମା, ଢେର ହେଲଣି, ଆଉ ଘଷ ନା । ଏହା କହି ସେ ଉଠିଲେ ଏବଂ ଧୀରେ ଧୀରେ ଗୃହର ପଶ୍ଚାତଭାଗରେ ଥିବା ଫଳ ବଗିଚା ଆଡ଼କୁ ଚାଲିଲେ ।



## ଏକାଦଶ ପରିଚ୍ଛେଦ

ପରଦିନ ଗୌରୀପ୍ରିୟା ହରଶଙ୍କରଙ୍କୁ ଡାକି ନିରେଳାରେ ପଚାରିଲେ—ବାବା, ତୋର ଇଚ୍ଛାଟା କଣ କହିଲୁ ?

ହରଶଙ୍କର କହିଲେ—କଣ ମା ? କେଉଁ କଥା ?

ଗୌରୀପ୍ରିୟା କହିଲେ—ଏଇ ସେ ଦିନ ବିବାହ କରିବାପାଇଁ ମୋ ପାଖରେ କହିଗଲୁ । ଦୁଇ ଦୁଇଟା ଜାଗାରୁ ସମ୍ବନ୍ଧ ଆସିଲା । କୌଣସିଟା ତ ତୋର ମନକୁ ପାଇଲା ନାହିଁ, ତେବେ ତୁ କଣ ଚାହୁଁ ?

ହରଶଙ୍କର ଉତ୍ତର ଦେଲେ—ମୁଁ ତ କିଛି ଚାହେଁ ନାହିଁ ମା, ସେହି କଥାତ ମୁଁ ସ୍ପଷ୍ଟ କରି ମାମୁଙ୍କ ପାଖକୁ ଚିଠିରେ ଲେଖିଥିଲି । ସେମାନଙ୍କୁ ମଧ୍ୟ ପରିଷ୍କାର ମନା କରିଦେବାକୁ କହିଥିଲି ।

ଗୌରୀପ୍ରିୟା—ହଁ, ତା ତ କହିଥିଲୁ ହର । ତେବେ ଏମିତ କଥା କହିବାର ଉଦ୍ଦେଶ୍ୟ କଣ, ମୁଁ ଶୁଣେ । ବିଭା କରିବାକୁ କଣ ତୋର ଇଚ୍ଛା ନୁହେଁ ? ଆଉ କାହିଁକି ବା ନୁହେଁ ?

ହରଶଙ୍କର କହିଲେ—ବିବାହ ତ କରିଛି ମା । ତୋ ପାଖରେ ଯେଉଁ ପ୍ରତିଜ୍ଞା କରିଥିଲି, ତା ତ ରଖିଛି ।

ମା ଏ କଥାର ବିନ୍ଦୁ ବିସର୍ଗ କିଛି ବୁଝି ପାରିଲେ ନାହିଁ । ଆଶ୍ଚର୍ଯ୍ୟ ହୋଇ କିଛି କ୍ଷଣ ପୁଅର ମୁହଁକୁ ଚାହିଁ ରହିଲେ । ପରେ କହିଲେ କଣ, ବିବାହ କରିଛୁ ? କାହିଁ, କେହି ତ ଜାଣିଲେ ନାହିଁ ! ଏ ପୁଣି କି ନୂଆ ପାଗଳାମି ତୋର ?

ହରଶଙ୍କର ହସି ହସି ଜବାବ୍ ଦେଲେ—ନା ମା, ନୂଆ ପାଗଳାମି କିଛି ନୁହେଁ,—ଠିକ୍ ସେଇ ପୁରୁଣା ପାଗଳାମି । ଯେଉଁ ପାଗଳାମିଟା ଚିରକାଳ ଦରଦାସ୍ତ କରି ଆସୁଛି ଏଟା ସେହି ଧରଣର ।

ତେବେ ବିବାହର କଥାଟା କେହି ଜାଣେ ନାହିଁ, କାରଣ ସେଥିରେ ବାଇଦ ବେଷଣି କାରବାର ହୋଇ ନାହିଁ ।

ମା ବିରକ୍ତ ହୋଇ କହିଲେ—କଣ ଯେ କହୁ, ତାର ଅର୍ଥ ମୁଁ କିଛି ବୁଝି ପାରେ ନାହିଁ, ହରି ! କଥାଟା ଟିକିଏ ସାଫ୍ କରି କହ ଭଲା ।

ହରିଶଙ୍କର ଉତ୍ତର ଦେଲେ—ସଫାକରି କହିବାକୁ ଗଲେ—ମୁଁ ବିବାହ କରିଛି, ବୋହୂ ଅଣିଛି, ତୋ ହାତରେ ଦେଇଛି । ଅଜ କଣ ?

ରାଧାପ୍ରିୟାଙ୍କ ମନକୁ ଏଥର ଟିକିଏ ସନ୍ଦେହ ଛୁଇଁଲା । ମୁଖ ତାଙ୍କର ଭାବରୁ ତାହା ପ୍ରକାଶ ପାଇଲା । ସେ ହରିଶଙ୍କରଙ୍କ ମୁହଁକୁ ବଲ୍ ବଲ୍ ହୋଇ ଅନାଇ ପଚାରିଲେ—ବୋହୂ କିଏ ରେ ?

ହରିଶଙ୍କର ତୁରନ୍ତ ଉତ୍ତର ଦେଲେ—ତା ନାଁ ସୁଷମା, ଏଥର ବୁଝିଲୁ ?

ରାଧାପ୍ରିୟା ଅକସ୍ମାତ୍ ଯେପରି ପର୍ବତଶିଖରରୁ ଖସି ପଡ଼ିଲେ । କଣ ? ହରିଶଙ୍କର ସୁଷମାକୁ ବିବାହ କରିଛନ୍ତି ? ଏଟା ସ୍ୱପ୍ନ ନା ସତ୍ୟ ! ହରିଶଙ୍କର ବ୍ରାହ୍ମଣ ସନ୍ତାନ, ପୁଣି ସୁଷମା ଯେ ଚଣ୍ଡାଳର ଘର ଝିଅ ! ବଡ଼ଲୋକର ପିଲା କେଉଁଠି କେମିତ ଖାମଖିଆଲରେ ସ୍ୱଜାତିର ଟିକିଏ ଘରେ ବାନ୍ଧି ହୋଇପଡୁଛନ୍ତି । କିନ୍ତୁ ତା ବୋଲି କଣ ଜାତି ଜାଟିଗଲା ?

ରାଧାପ୍ରିୟା ଭାବିଲେ—କି ଅକାଳ କଥା ! ହରିଶଙ୍କର କଣ ସତେ ସୁଷମାକୁ ବିବାହ କରିଛି ? ନା, ଚିଛରେ ଏପରି କୌତୁକ କରୁଛି ?

ସନ୍ଦେହରେ ପଡ଼ି ସେ ପଚାରିଲେ—ସତ କଥାଟା କଣ କହ ବାବା । ଏମିତି ଗୁଡ଼ାଏ କଣ କହୁଛୁ !

ହରଶଙ୍କର କହିଲେ—ତୋ ସାଙ୍ଗରେ କଣ ଧନ୍ଦା କରୁଛି ମା ? ସତ କଥାଟାହିଁ ତ କହୁଛି । ମୁକ୍ତିର ସମସ୍ତ ଭାର ମୁଁ ନେଇଛି । ତାହାର ନାମ ବିବାହ । ସେଥିରେ ସନ୍ଦେହ କରିବାର କୌଣସି କାରଣ ନାହିଁ । ଅନ୍ୟ ଲୋକେ ଢାକ ଢୋଲ ବଜାଇ ଘରକୁ ଯେପରି ବୋହୂ ଆଣନ୍ତି, ମୁଁ ଅବଶ୍ୟ ତା କରି ନାହିଁ ମା । ସେଟା ଖାଲି ଲୋକଦେଖା କଥା,—ଗୋଟାଏ ବାହ୍ୟ ଢଙ୍ଗ । ବିବାହଟା ଖାଣ୍ଟି ଅନ୍ତରର ମେଳ । ସେଥିପାଇଁ ଏତେ ଗୋଳମାଳ କରିବାର ଅର୍ଥ ମୁଁ କିଛି ବୁଝି ପାରେ ନାହିଁ । ସେଥିରେ ମନ୍ତ୍ରପାଠର ଦରକାର ନାହିଁ, ପୁରୋହିତର ବି ପ୍ରୟୋଜନ ନାହିଁ । ଆମ୍ହିଁ ସେଠି ପୁରୋହିତ,—ଆମର ଅଭିଳାଷହିଁ ତାହାର ମନ୍ତ୍ର ।

ହରଶଙ୍କର ଏହିପରି କେତେ କଣ ବକ୍ତୃତା କରିଗଲେ । କିନ୍ତୁ ସୁପ୍ରିୟା ତାର ଗୋଟାଏ ବର୍ଣ୍ଣ ସୁଦ୍ଧା କାନରେ ନେଲେ ନାହିଁ । ପାଗଳର ପ୍ରଳାପ ପରି ସବୁ ତାଙ୍କୁ ଅସାର ବୋଧହେଲା । ସେ କେବଳ ଅବାକ୍ ହୋଇ କାଷ୍ଠ ପୁତ୍ତଳି ପରି ଠିଆ ହୋଇ ରହିଲେ ।

ହରଶଙ୍କର କହିବାକୁ ଲାଗିଲେ—ତୋତେ ଏଟା ଖୁବ୍ ବିଚିତ୍ର ବୋଧ ହେଉଛି, ନା ମା ? କିନ୍ତୁ ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଭାବି ଦେଖିଲୁ, ମୁକ୍ତିର ସ୍ୱଭାବ ଚରିତ୍ର ବିଷୟରେ ଯଦି କୌଣସି ଆପତ୍ତି ନ ଥାଏ, ତେବେ ବିବାହରେ ବାଧା କଣ ? ମୁକ୍ତି କି ତୋର ମନକୁ ପାଉନାହିଁ ମା ?

ସୁପ୍ରିୟା ଉତ୍ତର ଦେଲେ—କଣ ଯେ କହୁଛ ତା ମୁଁ କିଛି ବୁଝିପାରୁ ନାହିଁ ବାବା । ମନକୁ ପାଇବା ନ ପାଇବା କଥା ତ ନୁହେଁ, ତା ହୋଇଥିଲେ କାହାର କିଛି କହିବାର ନ ଥାନ୍ତା ! କିନ୍ତୁ ଏ ଯେ ହେଲା ଜାତି ଗୋଷ୍ଠୀର କଥା, ହବ । ମୁକ୍ତି ତ ବ୍ରାହ୍ମଣ ଘରର ପୁଅ ନୁହେଁ । ତା ସାଙ୍ଗରେ ମୋର ବିବାହ କେମିତି ହୋଇପାରେ, କହିଲ ?

ଶୂଦ୍ର କନ୍ୟାକୁ କୌଣସି ବ୍ରାହ୍ମଣ କେବେ ବିଭା ହୋଇଛନ୍ତି ? କେଉଁ କାଳରେ ଏ କଥା ହୋଇଲାଣି ? ତୁ ତ ଏତେ ପାଠ ପଢ଼ିଛୁ, କହିଲୁ ଏମିତି ଘଟଣାଟା କେଉଁଠି ଘଟିଛି ? ସାରା ଦୁନିଆରେ ଯା ହୋଇ ନାହିଁ, ତୁ ତା କରିବାକୁ ଯାଉଛୁ । ଏଥିରେ ଲୋକେ ତୋତେ ପାଗଳ ନ କହି ଆଉ କଣ କହିବେ ?

ହରିଶଙ୍କର କହିଲେ—କହନ୍ତୁ ମା, ସେଥିରେ କଣ ଯାଏ ଆସେ ? ଯେଉଁଟା ଉଚିତ କାର୍ଯ୍ୟ ତା କରିବାକୁ ଯାଇ ଯଦି ଦେଶ ଦୁନିଆରୁ ପାଗଳ ଆଖ୍ୟା ମିଳେ, ତା ହେଲେ ତ ପାଗଳ ହେବାହିଁ ଭଲ । ସେଥିରେ ତ ଅପମାନର କଥା କିଛି ନାହିଁ, ସେଇଟାକୁ ମୁଁ ବରଂ ଗୌରବ ବୋଲି ମନେ କରେ । ତେବେ, ତୋର ପୁଅକୁ ଲୋକେ ପାଗଳ ବୋଲି କହିବେ, ଏଇ ତ ତୋର ଭୟ ମା ? ଏହା କହି ହରିଶଙ୍କର ହସିବାକୁ ଆରମ୍ଭ କଲେ । ରାଧାପ୍ରିୟା ଗମ୍ଭୀର ହୋଇ ରହିଲେ । ହରିଶଙ୍କର ପଚାରିଲେ—ଆଉ କଣ ଭାବୁଛ ମା ?

ମା କହିଲେ—ଏଟା କି ସମ୍ଭବ, ହରି ?

ହରିଶଙ୍କର ଉତ୍ତର ଦେଲେ—କାହିଁକି ସମ୍ଭବ ନୁହେଁ ଶୁଣେ ? ଆଉ କେହି ଏପରି କରି ନାହିଁ ବୋଲି ? ତେବେ ଯାହା କେହି କରି ନାହିଁ, ତା ଯେ କେହି କରିବ ନାହିଁ ଏ ବା କି କଥା ? ତା ହେଲେ ଯେ ଏଥିରୁ ପ୍ରମାଣ ହୁଏ ମା, ଆଗରୁ ଯାହା ଲୋକେ କରି ଆସିଛନ୍ତି ସେଇଟାହିଁ କେବଳ ସତ୍ୟ, ଆଉ ସମସ୍ତ ମିଥ୍ୟା । ବ୍ରାହ୍ମଣ କାହିଁକି ଶୂଦ୍ର ବିବାହ କରିବ ନାହିଁ, ଏହାର କିଛି କାରଣ ଅଛି । ବ୍ରାହ୍ମଣକୁ ଛାଡ଼ି ଆଉ ସମସ୍ତେ କି ଶୂଦ୍ର ? ପୁଣି ବ୍ରାହ୍ମଣ ଶୂଦ୍ର ଏ ଭେଦ ବା କାହାର ସୃଷ୍ଟି ? ସେଇ ମଣିଷ ତ ଏହା କରିଛି । ତେବେ ସେହି ମଣିଷ କାହିଁକି ଏ ଭେଦ ନ ଉଠେଇବ ? ବିଶେଷତଃ ଯେତେବେଳେ ସମାଜ ପକ୍ଷରେ ଏଟା ଅମଙ୍ଗଳର କାରଣ ହୋଇ ରହିଛି । ହଁ, କେବେ

କେତେବେଳେ ଏହା ସମାଜର ଦରକାରରେ ଆସିଥାଇପାରେ, ହୁଏତ ତାଦ୍ୱାରା କେତେ ସମାଜର ମଙ୍ଗଳ ହୋଇଥାଇପାରେ । କିନ୍ତୁ ସବୁ ଦିନେ କି ଏକ ଅବସ୍ଥା ଥାଏ ? ଆଜି ଯେତେବେଳେ ସ୍ପଷ୍ଟ ଦେଖା ଯାଉଛି ଯେ ଏହା ଦ୍ୱାରା ସମାଜର କ୍ଷତି ଛଡ଼ା ଲାଭ ନାହିଁ, ତେବେ ଏହାକୁ ସମାଜର ରୋଗ ବୋଲି ଧରିବାହିଁ ଯୁକ୍ତିଯୁକ୍ତ, ଆଉ ସେ ରୋଗର ପ୍ରତିକାର କରିବାହିଁ ଉଚିତ ।

ସୌଦାମିନୀ ଏ ଯୁକ୍ତିର ମର୍ମ କେତେ ବୁଝିଲେ କେତେ ବା ନ ବୁଝିଲେ । କିନ୍ତୁ ସନ୍ଦିଗ୍ଧ ମନରେ ଶେଷ କଥାର ଜବାବ ଦେଇ କହିଲେ—କିଏ ସେ ପ୍ରତିକାର କରିବ, ବାବା ?

ହରଶଙ୍କର ଟିକିଏ ଉତ୍ତେଜିତ କଣ୍ଠରେ ଉତ୍ତର ଦେଲେ—ଯିଏ କରିବ, ମୁଁ କରିବି, ସମସ୍ତେ କରିବେ ମା । ଏଥିପାଇଁ ବାଟ ଦେଖାଇବାକୁ ହେବ, ସମାଜ ଆଗରେ ଆଦର୍ଶ ଥୋଇବାକୁ ହେବ । ତା ଆଖିରେ ଅଙ୍ଗୁଳି ଭର୍ତ୍ତି କରି ଚେତାଇ ଦେବାକୁ ହେବ । ତାକୁ ଜୋର ଗଳାରେ କହିବାକୁ ହେବ—ଦେଖ ସମାଜ ! ଅନ୍ଧ ସମାଜ ! ତୋତେ ଏ ଅନାବଶ୍ୟକ ପ୍ରାଚୀନ ସାପର ଖୋଳ ଛାଡ଼ିବାକୁ ହେବ । ଏ ଜୀର୍ଣ୍ଣ ଆବରଣରେ ତୋର ମଙ୍ଗଳ ନାହିଁ,—ଉନ୍ନତି ନାହିଁ ବରଂ ଏହା ଅମଙ୍ଗଳରେ ଅବନତିର ଚିହ୍ନ । ଏହା ତୋର କଳଙ୍କ । ଏହା ତୋତେ ଛିନ୍ନବିଚ୍ଛିନ୍ନ କରି ରଖିଛି, ତୋର ଶକ୍ତି କମେଇଛି, ତୋତେ ଦୁର୍ବଳ କରିଛି । ମନୁଷ୍ୟଠାରୁ ମନୁଷ୍ୟକୁ ତଫାତ୍ କରି ରଖିବା ପାଇଁ ଏହା ଗୋଟାଏ ବିଷାକ୍ତ କଣ୍ଟକମୟ ବାଡ଼ । ଏ ବାଡ଼କୁ କାଟି ସଫା କରିବାକୁ ହେବ । ନିର୍ମମଭାବରେ ଏହାର ମୂଳୋତ୍ପାଟନ କରିବାକୁ ହେବ । ଯେପରି ଟିକିଏ ମାତ୍ର ଚେର ନ ରହେ ତା ଦେଖିବାକୁ ହେବ । ସେଇଥିରେହିଁ ତୋର ଅମ୍ବରଡ଼ାଣ—

ଯେଉଁଥିରେହିଁ ତୋର ଶକ୍ତି ପ୍ରତିଷ୍ଠା,—ତୋର ଗୌରବ,—ତୋର ବୁଦ୍ଧି ।

ହରଶଙ୍କର ଗରମ ହୋଇଉଠିଲେ । ସେ ଭୁଲିଗଲେ—ଅଳ୍ପ ଶିକ୍ଷିତା ବା ଅର୍ଦ୍ଧ ଶିକ୍ଷିତା ଏକ ନାରୀ ଆଗରେ ଏତେଗୁଡ଼ାଏ ସଂସ୍କୃତର ଅସ୍ଫାଳନ ଅନାବଶ୍ୟକ । ବ୍ରାହ୍ମଣୀ ଏଇ ସବୁ ବୁଦ୍ଧି ଯୁକ୍ତିର ଅର୍ଥ କିଛି ବୁଝିପାରିଲେ ନାହିଁ । ଅକାଳଚଟକ ପରି ସେଗୁଡ଼ାକ ତାଙ୍କ କର୍ଣ୍ଣମୂଳରେ ଭୀଷଣ ଧକ୍କା ଦେଇ ତାକୁ ଝାଁ ଝାଁ କରି ଦେଇଗଲା । ତାଙ୍କ କାନରୁ ଅତଡ଼ା ଖସି ପଡ଼ିଲା, କ୍ଷଣକାଳ ପାଇଁ ସେ ଯେପରି ବଧୀର ପାଲଟିଗଲେ ।

ହରଶଙ୍କର ପୁନର୍ବାର ଆରମ୍ଭ କଲେ—"ମା ତୋତେ ଆଜି ମୋର ଏ କାର୍ଯ୍ୟରେ ସାହାଯ୍ୟ କରିବାକୁ ପଡ଼ିବ, କନ୍ୟା ଛାଡ଼ିବାକୁ ହେବ । ପୁଅର ମୁଣ୍ଡରେ ହାତଦେଇ ଆଶୀର୍ବାଦ କରିବାକୁ ହେବ । କହିବାକୁ ହେବ—କୁଚ୍ କରିଲୁ ବାବା, ବେଶ୍ କରିଲୁ । ଭଗବାନ୍ ତୋତେ ଶକ୍ତି ଦିଅନ୍ତୁ, ତୁ ଜୟୀ ହ ।

ଏହା କହି ହରଶଙ୍କର ଜ୍ୱଳନ୍ତ ନେତ୍ରରେ ମାଆର ମୁହଁକୁ ଚାହିଁ ରହିଲେ । ମା ଏ ବାଗ୍‌ଜାଲରେ ଅବାକ୍ ହୋଇ ଯାଇଥିଲେ, ସୁତରାଂ କୌଣସି ଉତ୍ତର ଦେଇ ପାରିଲେ ନାହିଁ । କିନ୍ତୁ ପୁତ୍ରର ସେ ଜ୍ୱଳନ୍ତ ନେତ୍ରର ଦୀପ୍ତି ଦେଖିଲେ—ସେ ତୀବ୍ରକଣ୍ଠର ଗର୍ଜନ ଶୁଣିଲେ । ପ୍ରାଣରେ ତାଙ୍କର ଶଙ୍କା ଜାତ ହେଲା, ସେ ସନ୍ତ୍ରସ୍ତ ହୋଇପଡ଼ିଲେ । କିଛି ନ କହି ସେ ନିତାନ୍ତ ନିଃସହାୟା ପରି ଗୋଟାଏ ଦୀର୍ଘ ନିଃଶ୍ୱାସ ତ୍ୟାଗ କଲେ । ଏହି ସମୟରେ ଚାକର ଆସି ଖବର ଦେଲା ଅନେକ ପ୍ରଜା ଆସି ବାହାରେ ଜୁଟି ହୋଇଛନ୍ତି, ସେମାନେ ବାବୁଙ୍କ ସହିତ ସାକ୍ଷାତ ଚାହାନ୍ତି । ସେମାନଙ୍କର କି ଗୋଟାଏ କଥା କହିବାର ଅଛି ।

ହରଶଙ୍କର କହିଲେ—ଅଚ୍ଛା, ସେମାନଙ୍କୁ ଅପେକ୍ଷା କରିବାକୁ କହ, ମୁଁ ଯାଉଛି ।

ଏହା କହି ସେ ମା ରାଧାପ୍ରିୟାଙ୍କୁ କହିଲେ—ମା, ପରେ କଥାବାର୍ତ୍ତା ହେବା, ସେମାନେ କାହିଁକି ଅସିଛନ୍ତି ବୁଝେଁ ।

ହରଶଙ୍କର ବାହାରକୁ ଚାଲିଗଲେ । ମା ବସି ବସି ଭାବିବାକୁ ଲାଗିଲେ । ସୁଷମାକୁ ସେ ନିଜର ପୁତ୍ରବଧୂ ବୋଲି କିପରି ଭାବିବେ,—ତାହା କୌଣସି ମତେ ସ୍ଥିର କରି ପାରିଲେ ନାହିଁ । ଅବଶ୍ୟ ତାର ରୂପ ଅଛି । ଏତେ ବଡ଼ ଗୋଟାଏ ଘରର ଗୃହଲକ୍ଷ୍ମୀ ହୋଇ ଲାବଣ୍ୟର ଲୀଳା ଖେଳାଇବାକୁ ଯେତେ ରୂପବିଭବର ପ୍ରୟୋଜନ ତା ସୁଷମାର ପୂର୍ଣ୍ଣମାତ୍ରାରେ ଅଛି । ରାଜରାଣୀ ହୋଇ ବସିବାର ସେ ଉପଯୁକ୍ତ । ରୂପଲାବଣ୍ୟର ବିଚାର ନେଇ କେହି ଯେ ତାକୁ ଖୁଣି ଦେଇପାରେ ତା ନୁହେଁ । ତାର କୌଣସି ଗୋଟାଏ ଅଙ୍ଗ ପ୍ରତ୍ୟଙ୍ଗର ଦୋଷ ବାହାର କରିଦେବା କଠିନ । ହରଶଙ୍କର ପରି ପୁଅ ପାଖକୁ ସାଜିବାଭଳି ଗୋଟିଏ କୁଳବଧୂର ଯଦି ପ୍ରୟୋଜନ ତା ହେଲେ ସେ ହେଉଛି ସୁଷମା । ତା ଛଡ଼ା ତାର ଆଉ ଗୋଟାଏ ଜିନିଷ ଅଛି,—ଯାହା ଅନେକ ରୂପବତୀର ନ ଥାଏ । ତା କଣ, ଅବଶ୍ୟ ଭଷାରେ କହିହେବ ନାହିଁ,—ବାକ୍ୟରେ ବର୍ଣ୍ଣନା କରିହେବ ନାହିଁ । କିନ୍ତୁ ତାର ମୁହଁଟିକୁ ଥରେ ଅନାଇଦେଲେ ଭିତରେ ଭିତରେ ତାହା ଉପଲବ୍ଧି ହୋଇଯାଏ । ଦେଖିଲା ଲୋକର ପ୍ରାଣରେ ମମତା ଆସେ,—ମୁହଁ ପରି ତାହା ଅଖିକୁ ଆକର୍ଷଣ କରିନିଏ, ତାହା ତାର ବିଶେଷତ୍ୱ । ଆଉ ଗୁଣର କଥା ? ଅବଶ୍ୟ ସୁଷମା ଏଇ ଦିନ ଦୁଇଟିମାତ୍ର ଏହି ଏ ଘରେ ଅସି ପାଦ ଦେଇଛି । ସେଥିରେ ଗୁଣର ପରିଚୟ ପୂର୍ଣ୍ଣମାତ୍ରାରେ ପାଇବା ସହଜ ନୁହେଁ । କିନ୍ତୁ ସୁଷମାର ଚାଲିଚଳଣି, ଗତିବିଧି,

ସ୍ୱଭାବ ପ୍ରକୃତ ଯେ ଲକ୍ଷ୍ୟ କରନ୍ତି, ସେ ବୁଝିନ୍ତି—ସେଥିରେ ବିଶେଷ କିଛି ନା-ପସନ୍ଦ କରିବାର ନାହିଁ ।

କିନ୍ତୁ କେବଳ ରୂପ ଗୁଣ ଉପରେ କି ସମସ୍ତ କଥା ନିର୍ଭର କରେ ? ସୌନ୍ଦର୍ଯ୍ୟରେ କି ସବୁ ସମସ୍ୟାର ସମାଧାନ ହୁଏ ? ଶ୍ୟାମପ୍ରିୟା ପରିଣାମ ବିଷୟ ଚିନ୍ତା କରିବାକୁ ଗଲେ । ଏହାର ପରିଣାମ କଣ କି ହେବ ? ଜାତି ପାଖରେ ହାତୀ ଯାଏ ନାହିଁ । ସମାଜ କଣ ଏ ସବୁ ନିର୍ବନ୍ଧକରେ ସ୍ୱୀକାର କରିବ ? ସମାଜପନ୍ଥୀମାନେ ଏହାକୁ ବିପଦ୍ଦୃଷ୍ଟିରେ ଦେଖିବେ,—ହରଶଙ୍କରଙ୍କୁ ବିଦ୍ରୋହୀ ବୋଲି ମନେ କରିବେ— ଏତେ ବଡ଼ ଗୋଟାଏ ନାମଡାକିବଂଶ ପତିତ ଶ୍ରେଣୀରେ ଅନ୍ତର୍ଭୁକ୍ତ ହେବ । ଘରେ ବାହାରେ ଗୃହଆଡ଼େ ଅଶାନ୍ତି ଉପୁଜିବ । କିଏ କେତେ ପ୍ରକାର କଥା କହିବେ,—କୁତ୍ସା ରଟନା କରିବେ,— ଦୁର୍ନାମ ଦେବେ । ହରିଶଙ୍କର ଏଥିପାଇଁ ଦାୟୀ ହେବେ । ବଂଶ ମର୍ଯ୍ୟାଦା ଲୋପର କାରଣ ବୋଲି କହି ସମସ୍ତେ ତାଙ୍କୁ ଦୋଷ ଦେବେ । ଜାତିଚ୍ୟୁତ ହୋଇ ତାଙ୍କୁ ରହିବାକୁ ହେବ । ନିଜ ଜୀବନରେ ସୁଖଶାନ୍ତି ରହିବ ନାହିଁ । ଏହି ସବୁ ଚିନ୍ତା ଶ୍ୟାମପ୍ରିୟାଙ୍କ ଆଖି ଆଗରେ ନାନା ବର୍ଣ୍ଣ ବିଭୀଷିକା ନେଇ ଚଳିତ ହେବାକୁ ଲାଗିଲା । ସେ ଭବିଷ୍ୟତ ଅନ୍ଧାର ଦେଖିଲେ । କିନ୍ତୁ ସେ ନିରୁପାୟ,—ନାରୀର । ହରିଶଙ୍କରଙ୍କୁ ଏଥିରୁ ନିବୃତ୍ତ କରିବାର ଉପାୟ କାହିଁ ?

ଶ୍ୟାମପ୍ରିୟା ନିଃଶ୍ୱାସ ପକାଇ ଉଠିଲେ । ଯନ୍ତ୍ରଚାଳିତ ପରି ସେ ଚାଲିଲେ । ଲକ୍ଷ୍ୟହୀନ ଭାବରେ ଆସି ସେ ଗୋଟାଏ ଅନଭିଳଷିତ ସ୍ଥାନରେ ଉପସ୍ଥିତ ହୋଇଗଲେ । ସେଠା ଏତ ପ୍ରକାଣ୍ଡ ଘରର ଗୋଟାଏ କ୍ଷୁଦ୍ର କକ୍ଷ । ତାର ଦ୍ୱାରଦେଶରେ ଦଣ୍ଡାୟମାନ ହୋଇ ଚନ୍ଦ୍ର ପ୍ରତିମାଟି ପରି ସୁଷମା ଶୂନ୍ୟକୁ ଚାହିଁ ରହିଛନ୍ତି । ମୁଖରେ ଯେପରି ଟିକିଏ ବିଷାଦର ଛାୟା, କିନ୍ତୁ ତାହା ସୌନ୍ଦର୍ଯ୍ୟକୁ ମଳିନ କରିପାରି

ନାହିଁ । ରୂପଯୌବନ ଯୁବତୀର ଅଙ୍ଗ ପ୍ରତ୍ୟଙ୍ଗରୁ ଯେପରି ଠମ୍ ଠମ୍ ହୋଇ ଝରିପଡ଼ୁଛି ।

ସତ୍ୟପ୍ରିୟଙ୍କ ଦୃଷ୍ଟି ସେହି ସୁନ୍ଦର ମୂର୍ତ୍ତି ଉପରେ ପଡ଼ିଲା । ହୃଦୟରେ ହଠାତ୍ ଗୋଟାଏ ପ୍ରତିକ୍ରିୟା ଆରମ୍ଭ ହୋଇଗଲା । କିଏ ଯେପରି ଅକସ୍ମାତ୍ ତାହାଁରେ ବିରକ୍ତି ଭରି ଦେଇଗଲା । ସେ ତୀବ୍ର କଣ୍ଠରେ କହିପକାଇଲେ—କାହିଁକି ଏମିତି ଏଠି ଠିଆଟା ହୋଇ ରହିଛୁ ?

ରୂଢ଼କଥା କହି ସୁଷମା ମନରେ କଷ୍ଟ ଦେବା ତାଙ୍କର ଆଦୌ ଅଭିପ୍ରେତ ନ ଥିଲା । କିନ୍ତୁ ଅଜ୍ଞାତସାରରେ ଭୁଲଟା କରି ହୋଇଗଲା । ମନର ତିକ୍ତତା ଆପେ ଆପେ କଥାଛଳରେ ବାହାରି ପଡ଼ିଲା । ସୁଷମା ଚମକି ଉଠିଲା । ଅପ୍ରତ୍ୟାଶିତ କର୍କଶସ୍ୱରରେ ବିଷବାଣ ତାର ମର୍ମମୂଳରେ ବିଦ୍ଧ ହୋଇଗଲା । ସେ ଟିକିଏ ଦବିଯାଇ, କଣ କରିବ କିଛି ଠିକ୍ କରିପାରିଲା ନାହିଁ । ଦ୍ୱାରଦେଶରେ ଛିଡ଼ା ହେବାଟା ସତ୍ୟପ୍ରିୟଙ୍କ ଚକ୍ଷୁରେ କାହିଁକି ଏତେ ଦୋଷାବହ ହେଲା ତାହା ସେ ବୁଝିବାକୁ ତିଳେ ମାତ୍ର ସମର୍ଥ ହେଲା ନାହିଁ । ମନେ ମନେ ଭାବିଲା—ଆଚ୍ଛା, ସେ କଣ ଅସଂଯତଭାବରେ ସେଠି ଛିଡ଼ାହୋଇ ରହିଥିଲା କି ? ସୁଷମା ନିଜର ପରିଧେୟ ବସ୍ତ୍ର ଓ ଅଙ୍ଗ ପ୍ରତ୍ୟଙ୍ଗ ଉପରେ ଦୃଷ୍ଟି ସଞ୍ଚାଳିତ କରି ଦେଖିଲା—ନା, ତା ତ ନୁହେଁ, କୌଣସି ଅସଂଯମର ଲକ୍ଷଣ ତ ନାହିଁ । ଦେହ ଅଙ୍ଗ ଯେପରି ଭାବରେ ଆବୃତ ରହିବାର କଥା, ତା ତ ଠିକ୍ ଅଛି । ତେବେ କଣ ହେଲା ? ମା କାହିଁକି ଚିଡ଼ିଲେ ? ଏ ପ୍ରଶ୍ନର କୌଣସି ଉତ୍ତର ସେ ଖୋଜି ପାଇଲା ନାହିଁ । ପ୍ରାଣ ବ୍ୟାକୁଳ ହୋଇ ଉଠିଲା । ଚକ୍ଷୁ ଲୋତକପୂର୍ଣ୍ଣ ହୋଇ ଆସିଲା । କିନ୍ତୁ ସେ ନିଜକୁ ସମ୍ଭାଳି ନେବାକୁ ଚେଷ୍ଟା କଲା । ମନେ ମନେ ତାକୁ କିଏ ଯେପରି

ପ୍ରବୋଧ ଦେଇ କହୁଲ—କାହିଁକି ବଚଳିତ ହେଉଚ୍ଛୁ ? ତୁ ପେ ଅଣ୍ଡିତା, ଏହା ତୋର ପ୍ରାପ୍ୟ ।

ରାଧାପ୍ରିୟା ଗୃହଲଗଲେ । ନିଜର ଶୟନକକ୍ଷରେ ପ୍ରବେଶ କରି ଯେ କୌଣସି ଗୋଟାଏ କାର୍ଯ୍ୟରେ ବ୍ୟାପୃତ ହେବାକୁ ଚେଷ୍ଟାକଲେ । ମାତ୍ର କାହିଁରେ ମନ ଲଗିଲା ନାହିଁ । ପ୍ରାଣଟା କଣ୍ଟକବିଦ୍ଧ ହେଲା ପରି ଜଣାଗଲା । ସେ ଦାଣ୍ଡାରୁ ଆସି ଡାକିଲେ—ସୁଷମା !

ସୁଷମା ପୁନର୍ବାର ଚମକି ଉଠିଲା । ମା ତାର ଆଜ କିଛୁ ଅପରାଧ—ଆଜ କୌଣସି ତ୍ରୁଟି ଲକ୍ଷ୍ୟ କଲେ ନା କଣ ? ସେ ଶଙ୍କିତ ହେଲା, ମାତ୍ର ଅବିଳମ୍ବେ ଜବାବ ଦେଲା—ଯାଉଛି ମା ।

କରୁଣମୂର୍ତ୍ତି ଧରି ଶଙ୍କିତ ହୃଦୟରେ ସୁଷମା ଯେତେବେଳେ ଆସି ରାଧାପ୍ରିୟାଙ୍କ ନିକଟରେ ଉପସ୍ଥିତ ହେଲା, ରାଧାପ୍ରିୟା ତାର ହାତଟି ଧରି ତାକୁ ଘର ଭିତରକୁ ଟାଣିନେଇ ପଚାରିଲେ—ମା, ଝୁଣି, ମନରେ କଷ୍ଟ ହେଲା ତୋର ?

ସୁଷମାର ରୁଦ୍ଧବେଦନା ଆଉ ବାଧା ମାନିଲା ନାହିଁ । ଚକ୍ଷୁ ଦ୍ୱୟରୁ ଅଶ୍ରୁବିନ୍ଦୁ ଟପ୍ ଟପ୍ ହୋଇ ଝରି ପଡ଼ିଲା । ରାଧାପ୍ରିୟା ତାକୁ କୋଳ ଉପରକୁ ଟାଣି ନେଇ ତାର ଚିବୁକଟି ଧରି କହିଲେ—"ମା ରେ କାନ୍ଦୁଛୁ ? ମୋର କଥାଟା କି ଏତେ ବାଧୁଛି ମା ?" ଏହା କହି ସେ ସୁଷମାକୁ ଭିଡ଼ି ଧରିଲେ । ନିଜର ବସ୍ତ୍ରାଞ୍ଚଳରେ ତାର ଅଶ୍ରୁସିକ୍ତ ମୁହଁଟି ପୋଛି ଦେଇ କହିଲେ—ମୁଁ କି ତୋର ମା ନୁହେଁ ଝୁଣି ? ମାଆର କଥାରେ କି ଏତେ କଷ୍ଟ ହୁଏ ? ଯା ମା, ଏଇ ଚାବିଟା ନେ, ଆଲମାରି ଭିତରେ ଗୋଟାଏ ତେଲ ଶିଶି ଅଛି ନେଇ ଆ । ଆଉ ସେଇ ଆଇନାଟା ଆଣ ।

ସୁଷମା ଧୀରେ ଧୀରେ ଆଲମାରି ଖୋଲିଲା । ତା ଭିତରେ ଅନେକଗୁଡ଼ାଏ ଶିଶି-ବୋତଲ ଥିଲା । କେଉଁଟା ନେବ ସେ ଠିକ୍

କରି ନ ପାରି ଚାହିଁ ରହିଲା । ରାଧାପ୍ରିୟା ବୁଝିପାରି କହିଲେ—'ସେଇ କୁନ୍ତଳରଞ୍ଜନ ଖଣ୍ଡିକ ମା ।' ସୁଷମା ଖଣ୍ଡିକ ବାହାର କରି ଆଣିଦେଲା, ପାନପତ୍ର ମଧ୍ୟ ଯଥାସ୍ଥାନରୁ ଆଣି ରାଧାପ୍ରିୟାଙ୍କ ହାତକୁ ବଢ଼ାଇଦେଲା । ରାଧାପ୍ରିୟା ସେ ସବୁ ନେଇ କଣ କରିବେ ତାହା ସେ ଜାଣି ନ ଥିଲା । ସେ ନୀରବରେ ଠିଆ ହୋଇ ରହିଲା । ରାଧାପ୍ରିୟା କହିଲେ—ଚାଲ୍ ମା, ସେହି ବାରଣ୍ଡାକୁ ଚାଲ୍ । ତୋର ମୁଣ୍ଡଟା କଣ ହୋଇଛି ରେ ! ନିଜ ହାତରେ ସଜାଡ଼ି ନ ଦେଲେ, ଧାବ ନାହିଁ ଦେଉନୁ ।

ଏହା କହି ସେ ସୁଷମାକୁ ଜୋରକରି ନେଇ ବାରଣ୍ଡାରେ ବସାଇ ତାର କେଶଦାମ ସୁବିନ୍ୟସ୍ତ କରିବାକୁ ଉଦ୍ୟତ ହେଲେ । କେଶ ବିନ୍ୟାସ ପରେ ସେ ସୁଷମାକୁ ନେଇ ପୁନଶ୍ଚ ଗୃହମଧ୍ୟରେ ପ୍ରବେଶ କଲେ । କହିଲେ—"ମା ସୁଷମା, ଟିକିଏ ରହ, ଗୋଟାଏ କାମ ଅଛି ।" ସୁଷମା ଠିଆହୋଇ ରହିଲା । ତାର ଭୟଭ୍ରାନ୍ତ ଅନେକ ପରିମାଣରେ କମି ଆସିଥିଲା । ତଥାପି ମୁହୂର୍ତ୍ତିକ ପୂର୍ବେ ରାଧାପ୍ରିୟା କାହିଁକି ତା ଉପରେ ବିରକ୍ତ ହୋଇ ଉଠିଥିଲେ ତାହା ସେ ବୁଝି ପାରୁ ନ ଥିଲା । ରାଧାପ୍ରିୟା ଗୋଟାଏ ଅଳଙ୍କାର ବାକ୍ସ ଖୋଲି ତହିଁରୁ ଗୋଟିଏ ସ୍ୱର୍ଣ୍ଣହାର ବାହାର କଲେ ଓ ତାହା ଆଣି ସୁଷମା ଗଳାରେ ପିନ୍ଧାଇ ଦେବାକୁ ଉଦ୍ୟତ ହେଲେ । ସୁଷିର ମନେ ପଡ଼ିଲା ସେହି ଦିନର କଥା,—ଯେଉଁଦିନ ହରିଶଙ୍କର ମଧ୍ୟ ଅତି ଆଦରରେ ତାର ଅଙ୍ଗୁଳିରେ ସ୍ୱର୍ଣ୍ଣ ଅଙ୍ଗୁରୀୟ ପିନ୍ଧାଇ ଦେବାକୁ ଚେଷ୍ଟା କରିଥିଲେ । ସୁଷି ସେଥିରେ ବାଧା ଦେଇଥିଲା । ଆଜି ମଧ୍ୟ ସେ ରାଧାପ୍ରିୟାଙ୍କୁ ବାଧାଦେଇ କହିଲା—"ନା ମା, ସେଥିରୁ ମୋତେ ରକ୍ଷା କରନ୍ତୁ, ମୁଁ ଆପଣଙ୍କ ଗୋଡ଼ ଧରୁଛି ।" ଏହା କହି ସେ ରାଧାପ୍ରିୟାଙ୍କ ପାଦସ୍ପର୍ଶ କରିବାକୁ ଚେଷ୍ଟା କଲା । ରାଧାପ୍ରିୟା ଆଶ୍ଚର୍ଯ୍ୟ ହେଲେ । ସୁଷମାର

ହାତ ଧରିପକାଇ କହିଲେ—ଏ କଣ ସୁଷମା ? ତୋର ଏ କି ଢଙ୍ଗ ?

ସୁଷମା କହିଲା—ସମସ୍ତଙ୍କ କଣ୍ଠରେ କି ରତ୍ନହାର ଶୋଭାପାଏ ମା ? ଏ ଅଭାଗିନୀ ଯେ ଆପଣଙ୍କର ସ୍ନେହଲାଭ କରିପାରିଛି, ସେତିକି ଯଥେଷ୍ଟ ।

ଉତ୍ତରଟା ଶୁଣି ସ୍ୱାମୀପ୍ରିୟା ପ୍ରଥମେ ଅବାକ୍ ହୋଇଗଲେ । ପରେ ସେ ଅନେକ ଜିଦ୍ଧି କଲେ । ମାତ୍ର କେଉଁଥିରେ କିଛି ଫଳ ହେଲା ନାହିଁ । ସୁଷମା କୌଣସି କ୍ରମେ ସେ ସ୍ୱର୍ଣ୍ଣାଳଙ୍କାର ପରିଧାନ କରିବାକୁ ରାଜି ହେଲା ନାହିଁ । ଅଗତ୍ୟା ସ୍ୱାମୀପ୍ରିୟା ସେଥିରୁ ନିରସ୍ତ ହେଲେ । କହିଲେ—ଏଡ଼େ ଜିଦିଖୋର ଝିଅ ତୁ, ତା 'ମୁଁ ଜାଣି ନ ଥିଲି ସୁଷମା ।

---

## ଦ୍ୱାଦଶ ପରିଚ୍ଛେଦ

ହରିଶଙ୍କରଙ୍କ ସାକ୍ଷାତ୍‌ପ୍ରାର୍ଥୀ ହୋଇ ସେ ଦିନ ଯେଉଁ ପ୍ରଜାମାନେ ଉପସ୍ଥିତ ହୋଇଥିଲେ ସେମାନେ ହରଶଙ୍କରଙ୍କୁ ଧରି ବସିଲେ ଯେ ସେମାନଙ୍କ ଗ୍ରାମର ଅନତିଦୂରରେ ଅନେକଗୁଡ଼ାଏ ଅନାବାଦୀ ଜମି ଜମିଦାରଙ୍କର ପଡ଼ି ରହିଛି, ସେମାନେ ସେ ସବୁ ଜମି ଗ୍ରହଣ କରିବାକୁ ଚାହାନ୍ତି, ସେଥିପାଇଁ ଅନେକ ଦିନ ହେଲା ସେମାନେ ଆବେଦନ କରି ଆସୁଛନ୍ତି, କିନ୍ତୁ ସେମାନଙ୍କର ଆବେଦନ ମଞ୍ଜୁର କରିବା ଦୂରେଥାଉ କେହି ତାହା କାନକୁ ବି ନେଉ ନାହାନ୍ତି । ସେମାନେ ଗରିବ ଲୋକ; ଜମିଦାରଙ୍କୁ ଉପଯୁକ୍ତ ସଲାମି ଦେଇ ଜମି ପଟା ନେବାକୁ ସେମାନଙ୍କର ସାମର୍ଥ୍ୟ ନାହିଁ; ହରଶଙ୍କର ସେମାନଙ୍କର ଗୁହାରି ନିଜେ ବୁଝି ସୁମୀମାଂସା କରିବେ ବୋଲି ସେମାନେ ଆଶା କରନ୍ତି; ସେଥିପାଇଁ

ସେମାନେ ଜମିଦାରବାବୁଙ୍କ ସଙ୍ଗେ ଦେଖା କରି ସମସ୍ତ ହାଲ ଜଣାଇବାକୁ ଆସିଛନ୍ତି । ହରିଶଙ୍କର ସେମାନଙ୍କ ଆବେଦନ ଶୁଣିଲେ । ଗୁମାସ୍ତାବାବୁଙ୍କୁ ଡାକି ସବୁ କଥା ମଧ୍ୟ ବୁଝିଲେ । ଅନେକ ଦିନରୁ ଯେ ପ୍ରଜାମାନେ ଏପରି ଆବେଦନ କରି ଆସୁଛନ୍ତି ଏହା ସତ୍ୟ । କିନ୍ତୁ ଜମିଦାରଙ୍କ ତରଫରୁ ବଡ଼ ବେଶି ସଲାମି ଦାବି କରା ଯାଉଛି । ପ୍ରଜାମାନେ ତା ଦେବାକୁ ଅସମର୍ଥ । ସେଥିପାଇଁ ଏତେ ଦିନ ହେଲା ଉକ୍ତ ଗୋଳ ଲାଗିଛି । ହରିଶଙ୍କର ଦେଖିଲେ—ଜମିଗୁଡ଼ାକ ଖାଲି ପଡ଼ିଆ ପଡ଼ିଛି,—ଜମିଦାରର ଯେ ସେଥିରୁ କିଛି ଲାଭ ହେଉଛି ତା ନୁହେଁ,—ପ୍ରଜାମାନେ ଯଦି ତାହା ଚାଷ କରିବାକୁ ଚାହାନ୍ତି ତେବେ ତା ଭଲ କଥା,—ଅନେକ ଦିନର ପଡ଼ିଆ ଜମିକୁ ଉଠିଆ କରିବାକୁ ହେଲେ ପ୍ରଥମେ ବଡ଼ ଖର୍ଚ୍ଚାନ୍ତ ହେବାକୁ ହୁଏ । ଏପରି ଅବସ୍ଥାରେ ଗରିବ ପ୍ରଜାମାନଙ୍କଠାରୁ ସଲାମି ଦାବି କରିବାଟା ଅନ୍ୟାୟ । ହରିଶଙ୍କର ଗୁମାସ୍ତାଙ୍କୁ ଡାକି କଚେରୀରେ ପରାମର୍ଶ କଲେ । ହରିଶଙ୍କର ପଚାରିଲେ—ଆଚ୍ଛା, ଗୁମାସ୍ତାବାବୁ, ଏମାନେ କଣ ସମସ୍ତେ ଗରିବ ? ଗୁମାସ୍ତା କହିଲେ—"ଆଜ୍ଞା, ଜଣେ ଦୁଇଜଣଙ୍କୁ ଛାଡ଼ିଦେଲେ ଅନ୍ୟାନ୍ୟ ସମସ୍ତେ ଗରିବ ।"

ହରିଶଙ୍କର କହିଲେ—ତେବେ ଯେଉଁମାନେ ଗରିବ ନୁହନ୍ତି ସେମାନଙ୍କୁ ବାଦ୍ ଦେଇ, ଗରିବପ୍ରଜାଙ୍କୁ ଏ ଅନାବାଦି ଜମିଗୁଡ଼ାକ ଚାଷ କରିବାକୁ ଦିଅ । ସେମାନେ ନିଜ ଚେଷ୍ଟାରେ ସେଗୁଡ଼ାକୁ ଉଠିଆ କରନ୍ତୁ । ଜମିର ଯାହା ନ୍ୟାଯ୍ୟ ଖଜଣା ତାହା ଧାର୍ଯ୍ୟ କରିଦିଆଯାଉ । ସଲାମି ଟଙ୍କା ସେମାନଙ୍କଠାରୁ ଆଦାୟ କରିବାଟା ବଡ଼ ନିଷ୍ଠୁରତା ହେବ ବୋଲି ମୁଁ ମନେ କରେଁ ।

ଗୁମାସ୍ତା ବାବୁ ମଧ୍ୟମାଙ୍ଗୁଳିରେ ମୁଣ୍ଡ କୁଣ୍ଡେଇ ହେଉଁ ହେଉଁ କହିଲେ—ଆଜ୍ଞା, ସମସ୍ତ ସଲାମି ଟଙ୍କାଟା କି—

ହରିଶଙ୍କର ଉତ୍ତର ଦେଲେ—ହଁ, ସମସ୍ତ । ସେମାନେ ତ ଖଜଣା ଦେବେ, ତେବେ ଆମର ଯିବ କଣ ?

କଥାଟା ଗୁମାସ୍ତା ବାବୁଙ୍କ ମନକୁ ପାଇଲା କି ନା ସେ ଜାଣନ୍ତି । ମାତ୍ର ଜମିଦାରଙ୍କ ଆଦେଶ ପାଳନ ନ କଲେ ତ ଉପାୟ ନାହିଁ । ତେଣୁ ସେ ସେଥିରେ ସମ୍ମତି ଜ୍ଞାପନ କରି କହିଲେ—'ହଜୁରଙ୍କର ଯାହା ଇଚ୍ଛା ।' ଏହା କହି ସେ ପ୍ରଜାମାନଙ୍କ ଆବେଦନ ପତ୍ର ଉପରେ ହରିଶଙ୍କରଙ୍କର ଗୋଟାଏ ଆଦେଶ ଲେଖିନେଲେ । ପରେ ପ୍ରଜାମାନଙ୍କୁ ସେ ଆଦେଶ ପଢ଼ି ଶୁଣାଇଦେଲେ । ପରେ ପ୍ରଜାମାନେ ତାହା ଶୁଣି କୃତଜ୍ଞ ହୃଦୟରେ ହରିଶଙ୍କରଙ୍କର ଅଜସ୍ର ପ୍ରଶଂସା କରିବାକୁ ଲାଗିଲେ । ଗୁମାସ୍ତାବାବୁ କହିଲେ—ଆହା ! ବାବୁ ଭାରି ଦୟାବାନ୍ । ଏମିତି ଜମିଦାର ପାଇବା ଭାଗ୍ୟରେ ଥିଲେ ଘଟେ । ଆଉ ମୁଁ କଣ ତୁମମାନଙ୍କ ପାଇଁ କମ୍ ଲଢ଼ିଛି ! ଯେତେ କହିବାର, ସବୁ କହିଛି । ବାବୁ ମୋତେ ଟିକିନିଖି କରି ସବୁ ପଚାରି ବୁଝିଲେ । ତୁମେମାନେ କିମିତିକା ଲୋକ, କାହାର ଅବସ୍ଥା କିମିତି;—କାହାର ଘର କିମିତି ଚଳେ, ଇତ୍ୟାଦି ଇତ୍ୟାଦି ଢେର ଢେର କଥା ପଚାରିଲେ । ମୁଁ ସବୁ ଠିକ୍ ଠିକ୍ କରି ବତେଇ ଦେଲି । କହିଲି—ଆଜ୍ଞା ଗରିବଗୁଡ଼ାକ, ହଜୁର ତାଙ୍କର ମା ବାପ । ସେମାନେ ବହୁତ ଦିନରୁ ଦରଖାସ୍ତ କରି ରହିଛନ୍ତି । ମାମୁଁ ସାଆନ୍ତେ ଶୁଣୁ ନାହାନ୍ତି, ସେ ଖାଲି ସଲାମି କଥା ଧରି ବସିଛନ୍ତି । ହେଲେ, ଗରିବଗୁଡ଼ାକ କେଉଁଠୁ ଏତେ ଟଙ୍କା ପାଇବେ ଯେ ସଲାମି ଦେବେ । ସେଗୁଡ଼ାକୁ ମାଫ୍ ଦିଆଯାଉ । ହଜୁର ଲକ୍ଷପତି, ହଜୁରଙ୍କର କଣ ଅଭାବ ?—ଏହିପରି ଢେର ଢେର କଥା ମୋତେ କହିବାକୁ ପଡ଼ିଲା । ନ ହେଲେ ଏତେ ଦିନରୁ ଯାହା ହୋଇପାରୁ ନ ଥିଲା, ତା ଘଡ଼ିକ ଭିତରେ ହୋଇଯାନ୍ତା !

ପ୍ରଜାମାନେ କହିଲେ—ହଁ, ହଁ, ତା ଠିକ୍ । ରାଜାଙ୍କ ପାଖକୁ ସେହିପରି ମନ୍ତ୍ରୀ ନ ହେଲେ କି ଚଳେ ?

ତା ପରେ ଗୁମାସ୍ତା ବାବୁ ସେମାନଙ୍କ ପିଠିରେ ହାତମାରି ହସି ହସି କହିଲେ—ଆଉ ମୋ କଥାଟା କଣ ତୁମେମାନେ ପାସୋରି ପକେଇବ ନା ? ପେଟ ପାଟଣାତ ପୁଣି ସମସ୍ତଙ୍କର ଅଛି ଭାଇ ! ତୁମମାନଙ୍କଠାରୁ ଦି ପଇସା ନ ପାଇଲେ ମୁଁ କେମିତି ଚଳିବି କହିଲେ ? ତୁମମାନଙ୍କର କି ଏଟା ବୁଝିବା ଉଚିତ ନୁହଁ ?

ପ୍ରଜାମାନେ ମୁଣ୍ଡ ଝୁଙ୍ଗାଇ କହିଲେ—ହଁ ହଁ, ସେଟା ଆଉ ଭୁଲିଯିବ ନା ଗୁମାସ୍ତାବାବୁ । ଏହା କହି ସେମାନେ କିଛି କିଛି ଗୁମାସ୍ତା ବାବୁଙ୍କୁ ଦେବାକୁ ପ୍ରତିଶ୍ରୁତ ହେଲେ ।

ପ୍ରଜାମାନେ ଜମିଗୁଡ଼ିକ ଆପଣା ଆପଣା ଭିତରେ ପରସ୍ପରର ରାଜିନାମାରେ ବାଣ୍ଟି ନେଇ ଚାଷ କରିବାକୁ ଆରମ୍ଭ କରିଦେଲେ । ଏହାର କିଛି ଦିନ ପରେ ହରଶଙ୍କରଙ୍କୁ କାର୍ଯ୍ୟୋପଲକ୍ଷରେ ସୁଦୂର ସମ୍ବଲପୁରକୁ ଯିବାକୁ ପଡ଼ିଲା । ଯିବା ପୂର୍ବରୁ ସେ ମୁକ୍ତିକୁ କହିଲେ—ମୁକ୍ତି ମୁଁ ଏଥର ଯାଉଛି, ବୋଧହୁଏ ଫେରିବାକୁ ଟିକିଏ ବିଳମ୍ବ ହେବ । ମାସେ ଦୁଇମାସ ଲାଗିଯାଇ ପାରେ । ମାମୁଁ ତ ଏପର୍ଯ୍ୟନ୍ତ ଜମିଦାରୀଗସ୍ତରୁ ଫେରିନାହାନ୍ତି । କେବେ ଫେରିବେ ତା ମଧ୍ୟ ଠିକ୍ ନାହିଁ । ଘରେ ରହିଲ, ମା ଆଉ ତମେ । ଯଦି ତମର କିଛି ଅସୁବିଧା ହୁଏ, ତା ହେଲେ ଲାଜ ବା ସଙ୍କୋଚ ନ କରି ମା'ଙ୍କୁ କହିବ । ସବୁ ଗୁମାସ୍ତାଙ୍କୁ ମୁଁ ମଧ୍ୟ କହି ଯାଉଛି,—ସେ ତୁମମାନଙ୍କର ତତ୍ତ୍ୱ ନେଉଥିବେ । ଆଉ କଣ ମୁକ୍ତି ?

ମୁକ୍ତି କହିଲା—ନା, ନା, କାହାରିକୁ କିଛି କହିବା ଦରକାର ନାହିଁ । ତେବେ—

ହରିଶଙ୍କର କହିଲେ—ହଁ, କଣ କହୁଛ କୁହ, ଏତେ ସଙ୍କୋଚ କାହିଁକି ? ଏଇଟାହିଁ ତମର ଭାରି ଦୋଷ ।

ସୁଷମା ଉତ୍ତର ଦେଲା—ଏଠି ବସି ବସି ବଡ଼ ବାଧ୍ ଲାଗୁଛି— କିଛି କାମ ଦାମ ନାହିଁ । ଏମିତି କଟା ସମୟ—

ହରିଶଙ୍କର ହସି ହସି କହିଲେ—ଓହୋ ! ସମୟ କଟୁନାହିଁ, ନା ? ଅଚ୍ଛା, ତା ହେଲେ କଣ କରିବାକୁ କହୁଛ ?

ସୁଷି ଜବାବ୍ ଦେଲା—ମା'ଙ୍କୁ ଏ ସମ୍ବନ୍ଧରେ କିଛି କହିଗଲେ ଭଲ ହୁଅନ୍ତା ନାହିଁ ?

ହରିଶଙ୍କର କହିଲେ—ଅଚ୍ଛା, କହିଯିବି । ସେଥିପାଇଁ ଚିନ୍ତା କର ନାହିଁ । ତେବେ ମୁଁ ଫେରିଆସିଲେ କାମର ହିସାବଟା ଦେବାକୁ ପଡ଼ିବ ।

ଏହା କହି ହରିଶଙ୍କର ହସିବାକୁ ଲାଗିଲେ । ସୁଷମା ମଧ୍ୟ ଟିକିଏ ହସିଲା । ତା ପରେ ହରିଶଙ୍କର ମା ସ୍ୱାପ୍ରିୟାଙ୍କ ନିକଟକୁ ଯାଇ କହିଲେ—ଶୁଣିଲଣି ମା ।

ସ୍ୱାପ୍ରିୟା ପଚାରିଲେ—କଣ ରେ ହରି ?

ହରିଶଙ୍କର ଉତ୍ତର ଦେଲେ—ଏଇ ଯେ ତୋର ବୋହୂର ଆପତ୍ତି—

ସ୍ୱାପ୍ରିୟା ତୁରନ୍ତ ଶାସନ କରି କହିଲେ—ଚୁପ୍ !

ହରିଶଙ୍କର ଧମକ୍ ଖାଇ ବନ୍ଦ ହୋଇଗଲେ । କବାଟ ଅନ୍ତରାଳରେ ଥାଇ ସୁଷମା ଏସବୁ ଶୁଣି ମରିଯିବା ପରି ହେଲା ।

ସ୍ୱାପ୍ରିୟା କହିଲେ—ହଁ ରେ ହରି, ସୁଷମା ତୋ ପାଖରେ କଣ ଆପତ୍ତି କରିଛି ? ଏଠି ତାର କିଛି ଅସୁବିଧା ହେଉଛି ?

ହରିଶଙ୍କର କହିଲେ ଅସୁବିଧା ନୁହେଁ ମା, କିଛି କାମ ଦାମ ନାହିଁ ବୋଲି ସୁଷମାର ଯା ଆପତ୍ତି । ଅଚ୍ଛା, ତା ଉପରେ କିଛି କାମର ଭାର ଦେଲେ ହୁଅନ୍ତା ନା କି ?

ରମାପ୍ରିୟା ହସି ଉଠିଲେ । କହିଲେ—ଓଃ ଏତେ ବଡ଼ ଆପତ୍ତି ! ଅଚ୍ଛା, ମୁଁ ଡାକ ବୁଝୁଛି ଯା, ଏହା କହି ସେ ଡାକିଲେ—ସୁଷମା !

ଲଜ୍ଜାବନତମୁଖୀ ସୁଷମା ନିତାନ୍ତ ଅନିଚ୍ଛାସତ୍ତ୍ୱେ ଉପସ୍ଥିତ ହୋଇ କହିଲା—କଣ ମା ?

ରମାପ୍ରିୟା ପଚାରିଲେ—କାମ କରିବାକୁ ଚାହୁଁ, ସୁଷମା !

ତଳକୁ ଅନାଇ ସୁଷମା ଅତ୍ୟେ ଅତ୍ୟେ ଉତ୍ତର ଦେଲା—ହଁ ମା, ଯାହା କରିବାକୁ କହିବେ ତା କରିବ ।

ରମାପ୍ରିୟା ହସି ହସି କହିଲେ—ଅଚ୍ଛା ହେଉ । ଏ କପାଳକୁ ମୋର ପାଗଳା ନେଉଟିଆଟା ଯେମିତି ମିଳିଛି, ତା ସାଙ୍ଗକୁ ତୁ ବି ଏକ ପାଗଳୀ ଆସି ଜୁଟିଛୁ ରେ !

ସୁଷମା ଏହା ଶୁଣି ନୀରବରେ ଚାଲିଗଲା । ରମାପ୍ରିୟା ସେ ଦିନ ଆଦେଶ ଦେଲେ—ପ୍ରତିଦିନ ସୁଷମାକୁ ତାଙ୍କର ପାଇଁ ଚଉଦ ଖଣ୍ଡ ପାନ ଭାଙ୍ଗିବାକୁ ହେବ, ଅଉ ସକାଳୁ ଗାଧୋଇ କୁଳଦେବତା ମଦନମୋହନଙ୍କ ପାଇଁ ଚାରୋଟି ଫୁଲର ହାର ଗୁନ୍ଥିବାକୁ ହେବ । ନାୟୁଣିରଖିଆ ମାଳୀ ଦେବାଳୟ ସଂଲଗ୍ନ ଉଦ୍ୟାନରୁ ପ୍ରତିଦିନ ଫୁଲ ତୋଳି ଆଣି ସୁଷମାର ହସ୍ତରେ ଅର୍ପଣ କରିଯିବ ।

ଏହି ବ୍ୟବସ୍ଥା ଅନୁଯାୟୀ ସୁଷମାକୁ ଚଳିବାକୁ ପଡ଼ିଲା । କିନ୍ତୁ ଏ କି ଗୋଟାଏ କାମରେ ଲେଖା ! ଯେ ଦିନେ ଏତେ କାମ କରୁଥିଲା ତା ପକ୍ଷରେ ଏ ଗୋଟାଏ ଖେଳ ଛଡ଼ା ଅଉ କଣ ହୋଇପାରେ ? ସୁଷମା ଏହି କାମ ପାଇଁ ଯେ ଆପତ୍ତି କରିଥିଲା ତା ନୁହେଁ । ତାର ଉଦ୍ଦେଶ୍ୟ ଥିଲା ଅନ୍ୟପ୍ରକାର । ଅନ୍ୟର ଆଶ୍ରିତା ହୋଇ ବସି ବସି କାଳକ୍ଷେପ କରିବାକୁ ତାକୁ ବଡ଼ କଷ୍ଟକର ବୋଧହେଉଥିଲା । ସେଥି ମଧ୍ୟ ତାକୁ ବଡ଼ ଅସୁନ୍ଦର ଦିଶୁଥିଲା । କୌଣସିକ୍ରମେ ସେ ନିଜକୁ

ଏ ଜମିଦାରପରିବାରର ଅଙ୍ଗ ବୋଲି ମନେ କରିପାରୁ ନ ଥିଲା । ପତ୍ନୀତ୍ୱର ନ୍ୟାଯ୍ୟ ଦାବି ଯାହା, ତା ଅପେକ୍ଷା ଅଧିକ କିଛି ଦାବି କରିବାଟା ତା ପକ୍ଷରେ ବଡ଼ ଅସଙ୍ଗତ ବୋଲି ସେ ଭାବୁଥିଲା । ଅନ୍ୟର ଗଳଗ୍ରହ ଛଡ଼ା ସେ ନିଜକୁ ଅନ୍ୟ କୌଣସି ଚକ୍ଷୁରେ ଦେଖିପାରୁ ନ ଥିଲା । ହରଶଙ୍କରଙ୍କର ମନର କଥା ଅବଶ୍ୟ ତାଙ୍କୁ ଅଜଣା ନ ଥିଲା । କିନ୍ତୁ ସେଇଟା କେବଳ ମନର କଥାମାତ୍ର । ହରିଶଙ୍କରଙ୍କୁ ବାଦ ଦେଲେ ଏତେ ବଡ଼ ଦୁନିଆରେ ଆଉ କିଏ ଅଛି ଯେ ତା ମଞ୍ଜୁର କରିବାକୁ ପ୍ରସ୍ତୁତ ? ସେ ନିଜେ ବି ଏଠାକୁ ସ୍ୱୀକାର କରିବାର କୌଣସି ଉପାୟ ଦେଖୁ ନ ଥିଲା । ତେଣୁ ପତ୍ନୀତ୍ୱର କର୍ତ୍ତବ୍ୟ ସମ୍ପାଦନ କରି ଏ ଗୃହରେ ଦୀନଦୁଃଖୀ ପରି ଚଳିବାକୁ ସେ ଚାହୁଁଥିଲା । ଏ ସଂସାରରେ କେତେ ନିରାଶ୍ରୟା ଅନାଥିନୀ ତ ପୁଣି ସେହିପରି ଜୀବନ କାଟୁଛନ୍ତି । ତେବେ ଆଉ କଣ ?

ହରଶଙ୍କର ପିଢ଼ା ତଳୁ ମା'ଙ୍କୁ ପ୍ରଣାମ କରି ବିଦାୟ ନେଲେ । କିନ୍ତୁ ଦୁଆରଠାରୁ ବିଦାୟ ନେବାବେଳେ ଆଲିଙ୍ଗନୋଦ୍ୟତ ପ୍ରଣୟୀର ନିରାଶ ହେବାକୁ ପଡ଼ିଲା । ମୁକ୍ତି ବାଧା ଦେଇ କହିଲା—ଛିଃ; ଥାଉ ।

ସଂସ୍କାରପ୍ରିୟ ହରଶଙ୍କର ଏଥିରେ କ୍ଷୁବ୍ଧ ହେଲେ । ହେବାର କଥା । ଚିରଜୀବନ କଣ ଏହି "ଛି—ଥାଉ"ର ସମ୍ମୁଖୀନ ହେବାକୁ ପଡ଼ୁଥିବ ? ମୁକ୍ତି କେବେ କି ତାଙ୍କ ପଥରେ ପଥିକ ହୋଇ ପାରିବ ନାହିଁ ? ହରିଶଙ୍କରଙ୍କ ମନରେ ଏହି ସନ୍ଦେହର ଛାୟାପାତ ହେଲା । କିନ୍ତୁ ଏତେ କଥା ଭାବିବାକୁ ବର୍ତ୍ତମାନ ସମୟ କାହିଁ ? ସେ ମନର କ୍ଷୋଭ ମନରେ ରଖି ଆଲିଙ୍ଗନରୁ ନିରସ୍ତ ହେଲେ ।

ଅଧିକ ଡେରି କଲେ ଗାଡ଼ିପାଇବା ଅସମ୍ଭବ ହୋଇପାରେ ମନେ କରି ସେ ଶୀଘ୍ର ଘରୁ ବାହାରି ପଡ଼ିଲେ ।

---

## ତ୍ରୟୋଦଶ ପରିଚ୍ଛେଦ

ଶ୍ୟାମପ୍ରିୟାଙ୍କ ସଂସାରରେ ସୁଷିର ଦିନ ପରେ ଦିନ କଟିବାକୁ ଲାଗିଲା । ଯେତେ ଦିନ ଅତିବାହିତ ହେଲା ସେତେ ଦେଖା ସ୍ନେହ ମମତାର ବନ୍ଧନ ଉଭୟଙ୍କ ମଧ୍ୟରେ ଦୃଢ଼ୀଭୂତ ହେଲା । ଶ୍ୟାମପ୍ରିୟାଙ୍କ ନିଃସଙ୍ଗ ଜୀବନରେ ସୁଷିର ସଙ୍ଗଲାଭ ଯଥାର୍ଥରେ ଶୁଭନିର୍ଦ୍ଦେଶ ପରି ପ୍ରତିଭାତ ହେଲା । ସୁଷି ସବୁବେଳେ ତାଙ୍କର ମନ ନେଇ କାର୍ଯ୍ୟ କରେ । ସୁଷିକୁ ପାଖରୁ ଛାଡ଼ିବାକୁ ଶ୍ୟାମପ୍ରିୟାଙ୍କର ଇଚ୍ଛା ହୁଏ ନାହିଁ । ନିଜର ଅଦରଣୀ କନ୍ୟାକୁ ମୁଦ୍ଧା ଲୋକେ ଏତେ ଆଦର କରନ୍ତି କି ନା ସନ୍ଦେହ । ସୁଷି ଯାହା କରେ ଶ୍ୟାମପ୍ରିୟାଙ୍କ ଦୃଷ୍ଟିରେ ତା ସୁନ୍ଦର; ସୁଷି ଯାହା କହେ, ଶ୍ୟାମପ୍ରିୟାଙ୍କ କର୍ଣ୍ଣରେ ତାହା ମଧୁର ହୋଇ ବାଜେ । ସୁଷି ପୂର୍ବ ନିର୍ଦ୍ଦେଶମତେ ପ୍ରତିଦିନ ତରଣ୍ଡ ପାନ ଭିଡ଼ିଦିଏ । ଶ୍ୟାମପ୍ରିୟା ସେ ତରଣ୍ଡ ଯାକ ଖେଞ୍ଚକରି ଦିନେ ଦିନେ ଆହୁରି ମାଗି ଖାଆନ୍ତି । ପାନ ଖାଇବା ବିଷୟରେ ସେ ଧୁରନ୍ଧର । ଉତ୍କଳର ପାନରସିକା ରମଣୀମାନଙ୍କ ନାମ ତାଲିକାରେ ତାଙ୍କର ନାମ ଅଗ୍ରଗଣ୍ୟ । ପାନ ଚୋବାଇବା ଛତପୋଗଡ଼ାରେ କେହି ଯେ ତାଙ୍କୁ ହଟେଇଦେଇପାରେ, ତା ନୁହେଁ । ପାନର ମହତ୍ତ୍ୱ ଶ୍ୟାମପ୍ରିୟା ଯେପରି ବୁଝନ୍ତି ଅନ୍ୟ କେହି ସେପରି ବୁଝିବାକୁ ସମର୍ଥ ବୋଲି ମନେ ହୁଏ ନାହିଁ । ଏଇଟା ତାଙ୍କର ଜୀବନର ଏକମାତ୍ର ବିଳାସ । ସେଥିପାଇଁ ତାମ୍ବୁଲ ସମ୍ବନ୍ଧୀୟ ସମସ୍ତ ସରଞ୍ଜାମ ସବୁବେଳେ ମହଜୁଦ ହୋଇ ରହିଥାଏ । ବାରମାସ ପାଇଁ କେତକୀ ଖଇର ପ୍ରସ୍ତୁତ ହୋଇ ତାଙ୍କ ପାଇଁ ରଖା ହୋଇଥାଏ;—ସୁନ୍ଦର ସୁବାସିତ ଗୁଆଚେବାଳା ଗୁଣ୍ଡିମସଲା କେବେବେଳେ ଘଟୁ ଘାଡ଼ ନ ଥାଏ । ଅତି ପରିପାଟି ସହକାରେ ସେ ସୁବାସିତ ଗୁଣ୍ଡିମସଲା ବହୁଦିନର ଏକ ପୁରୁଣା ଦାଣ୍ଡୀ

ଚିରଜୀବନର ଅଭିଜ୍ଞତା ନେଇ ତିଆରି କରେ । ରାଧାପ୍ରିୟାଙ୍କ ତାମ୍ବୂଳ ସେବନପାଇଁ ଯେତେ ବିଧିବ୍ୟବସ୍ଥା ଅବଲମ୍ବନ କରାଯାଇଥାଏ ଗୋଟାଏ ରାଜ୍ୟଶାସନ ପାଇଁ ବୋଧହୁଏ ତେତେ ବିଧି ବ୍ୟବସ୍ଥାର ପ୍ରୟୋଜନ ହୁଏ ନାହିଁ । ସେଥିରେ ସାମାନ୍ୟ ଦୋଷ ତ୍ରୁଟି ଘଟିଲେ ତାହା ଅମାର୍ଜନୀୟ ଅପରାଧ ବୋଲି ବିବେଚିତ ହୁଏ । ଅବିଶ୍ରାନ୍ତ ତାମ୍ବୂଳଚର୍ବଣ ଫଳରେ ରାଧାପ୍ରିୟାଙ୍କ ଦନ୍ତମାଳା ନୀଳକାନ୍ତମଣିର ଯେଉଁ ଦିବ୍ୟ ଦୀପ୍ତି ବିସ୍ତାର କରେ ତା ସହଜରେ ଅନୁମେୟ । ଚିରଜୀବନର ସାମାନ୍ୟ ଅଠ ଦଶ ବର୍ଷ ଛାଡ଼ିଦେଲେ, ଅନ୍ୟୂନ ପଞ୍ଚତ୍ରିଂଶ ବର୍ଷର ସୁଦୀର୍ଘ ସାଧନା ସେହି ଦନ୍ତମାଳାର ବିଶେଷତ୍ୱ ।

ସୁତି ରାଧାପ୍ରିୟାଙ୍କର ଏହି ତାମ୍ବୂଳ ସେବନ ବ୍ୟାପାରରେ ପରମ ସାହାଯ୍ୟକର୍ତ୍ରୀ । ଏ ଦିଗରେ ତାର ଟିକିଏ ଅଣୁମାତ୍ର ତ୍ରୁଟି ନ ଥାଏ । ସୁତିର ହାତଭଙ୍ଗା ପାନ ବଡ଼ ସ୍ୱାଦୁ ଲାଗେ, ରାଧାପ୍ରିୟାଙ୍କ ତୁଣ୍ଡରେ ତାହା ଅମୃତବତ୍ ପ୍ରତୀୟମାନ ହୁଏ । ଯେଉଁ ଦିନ ଫଗୁଣୀ ଝିଅଟିକୁ ଚିପିଯାଏ, ସେ ଦିନ ସୁଷମା ହସି ହସି କହେ,—"ଏଥିରେ ଆଉ ଯୋ ନାହିଁ ମା, ଗୋଟାଏ ଗୋଟାଏ ଦିନରେ ଗୋଟାଏ ଗୋଟାଏ ପାନବରଜ ଗ୍ରେହିଙ୍କ ନିକାଶ କରିଦେବ ଜଣା ଗଲଣି । କେତେ ପାନ ଖାଅ ମା !" ରାଧାପ୍ରିୟା କହନ୍ତି—'ଦୂର୍ ପାଗଳୀ, ତୁ ପାନର ମଜା କଣ ବୁଝିବୁ ରେ ? ଦିନେ ତ ଟିକିଏ ହେଲେ ପାନ ସେ ତୁଣ୍ଡ ଛୁଇଁବ ନାହିଁ । ଦାନ୍ତଗୁଡ଼ାକ କରି ରଖିଛୁ ଯେମିତି ଗୋରୁର ହାଡ଼, ଆଖିରେ ଦେଖିବାକୁ ବି ଇଚ୍ଛା ହେବ ନାହିଁ । ଭଗବାନ ଦୟାକରି ତୋତେ ଏଡ଼େ ସୁନ୍ଦର ଦାନ୍ତଗୁଡ଼ାଏ ଦେଇ ତାର ମର୍ଯ୍ୟାଦା ରକ୍ଷା କରିବାକୁ କଣ ଟିକିଏ ହେଲେ ବୁଦ୍ଧି ଦେଇ ନାହାନ୍ତି ।' ସୁତି ହସି ହସି ଜବାବ ଦିଏ—'ତା ହେଲେ ଦାନ୍ତର ରଙ୍ଗଟା କଣ ଗୋବର ଦିଏ ହେବା ଉଚିତ ମା ?' ରାଧାପ୍ରିୟା କହନ୍ତି—'ତା

ନୁହେଁ ତ ଆଉ କଣ ? ଆଜିଠୁ ଟିକେ ଟିକେ ପାନ ଖାଇବା ଶିଖ୍, ସେଥିରେ ତେର ଲାଭ ଅଛି ।' ସୁଷି ଉତ୍ତର ଦିଏ—'ଛିଃ, ଏ ଜନ୍ମରେ ନୁହେଁ ।' ସ୍ୱାମୀପ୍ରିୟା ନିରାଶ ହୋଇ ମନ୍ତବ୍ୟ ବାଢ଼ନ୍ତି—'କି ଦୁର୍ବୁଦ୍ଧି ଏ ଝିଅଟାର ! ଭାରି ଦୁଃଖୀ ହୁଏ,—ଯେ ଏଡ଼େ ସୁନ୍ଦର ପାନଭଙ୍ଗି ପାରେ, ସେ ପାନ ଖାଇ ଜାଣେ ନାହିଁ ।'

ଏଇ ପାନଭଙ୍ଗିବା ଏବଂ ମଦନମୋହନଙ୍କ ପାଇଁ ଫୁଲହାର ଗୁନ୍ଥିବା,—ଏଇ ଦୁଇଟାମାତ୍ର କାର୍ଯ୍ୟ ସ୍ୱାମୀପ୍ରିୟାଙ୍କ ଆଦେଶରେ ଥିଲା ସୁଷିର ଅବଶ୍ୟ କର୍ତ୍ତବ୍ୟ; ସେଥିରୁ ବେଶି କେହି ପ୍ରତ୍ୟାଶା କରୁ ନ ଥିଲେ ମଧ୍ୟ ସୁଷି ନିଜ ଇଚ୍ଛାରେ, ଏପରିକି ସମୟ ସମୟରେ ଅଳି କରି ସ୍ୱାମୀପ୍ରିୟାଙ୍କ ସମ୍ମତି ନେଇ ଅଧିକ କିଛି କିଛି କରେ । ସ୍ୱାମୀପ୍ରିୟା ଆରିଷାପିଠାକୁ ବଡ଼ ଭଲ ପାଆନ୍ତି । ସୁଷି ଭଲ ଆରିଷାପିଠା କରି ଜାଣେ । ଦିନେ ଦିନେ ସେ ପ୍ରସ୍ତାବ କରେ—'ମା, ଆଜି ଦିଟା ଆରିଷାପିଠା କଲେ ଭଲ ହୁଅନ୍ତା ନା କି ?' ସ୍ୱାମୀପ୍ରିୟା ବାହାରକୁ ଟିକିଏ ଔଦାସିନ୍ୟ ଦେଖାଇ କହନ୍ତି—କାହିଁକି ଏତେ ଝିଂଝଟକୁ ଯିବୁ ମା ? ସେଥିରେ କଣ କମ୍ ପରିଶ୍ରମ ? ସୁଷି କହେ—ପରିଶ୍ରମ କଣ ଅଛି ମା ? ଚାଉଳଚୁନା ତ କୁଟୁଣୀମାନେ କୁଟି ଦେବେ, ଆଉ କଣ ? ସ୍ୱାମୀପ୍ରିୟା ଆଦେଶ ଦିଅନ୍ତି—'ତା ହେଲେ ତୋର ଯଦି ମନ ହେଉଛି, ଦିଟା କର ।' କିନ୍ତୁ ପ୍ରକୃତରେ ମନଟା ସ୍ୱାମୀପ୍ରିୟାଙ୍କର ହୁଏ । ଚତୁର ସୁଷମା ତା ବୁଝିପାରେ । ସେଥିରେ ମାତିଯାଏ । କୁଟୁଣୀମାନଙ୍କୁ ଲଗାଇ ଚାଉଳଚୁନା କୁଟି ପାଗପତ୍ର ଆରିଷା ଛାଣି ଗଳଦ୍‌ଘର୍ମ ହୋଇ ତହିଁରେ ଆନନ୍ଦ ଅନୁଭବ କରେ । ଛଣା ସରିଲେ ଭଲ ଭଲ ପିଠା ବାଛି ଟିକିଏ ଥଣ୍ଡାକରି ଥାଳିରେ ସଜେଇନେଇ ସ୍ୱାମୀପ୍ରିୟାଙ୍କ ପ୍ରକୋଷ୍ଠକୁ ଯାଇ ଡାକ ଦିଏ—ମା । ସ୍ୱାମୀପ୍ରିୟା କହନ୍ତି—'ଆଉ ରଖିଦେଲୁ ନାହିଁ ରେ ତୁ । ଏ ମଧ୍ୟରେ

ଏତେ କାଣ୍ଡ କରି ବସିଛୁ ?' ତା ପରେ ସୁଧାପ୍ରିୟା ଅନେକ ପିଠା ଗୁଡ଼ିକର ସଦ୍‌ବ୍ୟବହାର କରି ଖୁସି ହୁଅନ୍ତି । ଦିନେ ସୁଧାପ୍ରିୟା ଧରି ବସିଲେ—'ସୁଷମା, ଆଜି ତୋତେ ମୋ ସାଙ୍ଗରେ ଖାଇବାକୁ ହେବ ମା ।' ସୁଷମା ବଡ଼ ମୁସ୍କିଲରେ ପଡ଼ିଲା । କିଛି କାମୁଡ଼ ପଳେଇବାକୁ ଇଚ୍ଛା କଲା । କିନ୍ତୁ ସୁଧାପ୍ରିୟା ଜିଗର କଲେ—ତା ନ ହେଲେ ଖାଇବ ନାହିଁ, ତୋ ପିଠା ତୋର ଥାଉ । ଅଗତ୍ୟା ସୁଷି ଆଉ ଗୋଟାଏ ପାତ୍ର ଆଣି ପାଖରେ ବସି ଖାଇବାକୁ ପ୍ରସ୍ତୁତ ହେଲା । ସୁଧାପ୍ରିୟା କହିଲେ—'ନା, ତା ହେବ ନାହିଁ ।' ସୁଷି ତାଙ୍କ ମୁହଁକୁ ଚାହିଁ ପଚାରିଲେ—ଆଉ କଣ ମା ? ସୁଧାପ୍ରିୟା କହିଲେ—'ଗୋଟାଏ ଥାଳୀରେ ତ ଆଣିଛୁ, ଆଉ ଗୋଟାଏ କଣ ହେବ ଯେ ପାଗଳୀ ?' ସୁଷି ଦ୍ୱିଧା ପ୍ରକାଶ କରି ଉତ୍ତର ଦେଲା—ତା କି ହୁଏ ମା ? ସୁଧାପ୍ରିୟା ଜୋର ଗଳାରେ କହିଲେ—' ଖୁବ୍ ହୁଏ, ଝିଅ ପୁଅ ଲୋକ । ସେମାନଙ୍କର ଗୋଟାଏ ଜାତିର ବିଚାର କଣ ?' ଏହା କହି ସେ ସୁଷିର ହାତଧରି ଜୋର କରି ଟାଣିନେଇ ବସାଇଲେ । ନିରୁପାୟ ସୁଷି ଗାଟେଇ ପାଟେଇ ଖାଇବାକୁ ଲାଗିଲା । ତାର ସଙ୍କୋଚ ଦେଖି ସୁଧାପ୍ରିୟା କହିଲେ—'ଏତେ ଡରି ଡରି ଖାଉଛୁ ଯେ ମା ! ଅଭିଅଡ଼ା ହିଅର ଜାତ ଧର୍ମ ଯାଏ ନାହିଁ ବୋଲି ଯେ ମୁଁ କହୁଛି, ସେଥି କି ତୋର ବିଶ୍ୱାସ ହେଉ ନାହିଁ ?' ଏହା କହି ସେ ଗୋଟାଏ ପିଠାଧରି ନିଜ ହାତରେ ସୁଷିର ତୁଣ୍ଡରେ ଭର୍ତ୍ତି କରିଦେଲେ । ସୁଷି ବ୍ୟସ୍ତହୋଇ ଆଣି ପ୍ଲାସଟା ପାଖକୁ ଘୁଞ୍ଚାଇଦେଇ କହିଲା—ହାତଟା ଧୋଇପକାଅ ମା । ସୁଧାପ୍ରିୟା ଗର୍ଜନ କରି ଉଠିଲେ—ସେମିତ କଥା ଆଉ କହିବୁ ନାହିଁ ସୁଷି, ଖବରଦାର ।

କ୍ରମେ ସୁଧାପ୍ରିୟାଙ୍କ ଇଚ୍ଛାରେ ପ୍ରତି ସପ୍ତାହରେ ଥରେ ମନଇଛା ପିଠା ହେବାର ବ୍ୟବସ୍ଥା ହେଲା । ଗୃହସ୍ଥାଳୀର ସମସ୍ତ ଏ

ସୁବ୍ୟବସ୍ଥାରେ ଯଦୃଚ୍ଛେନାସ୍ତି ସନ୍ତୁଷ୍ଟ । ଦାସଦାସୀମାନେ ସପ୍ତାହରେ ସେହି ସୌଭାଗ୍ୟର ଧନଟାକୁ ଯତ୍ନସ୍ତ ପ୍ରାଣରେ ଗୃହଁ କହୁଥାନ୍ତି । ସେ ଧନଟା ଆସିଲେ ସମସ୍ତେ ଯେପରି ବଡ ତତ୍ପର ହୋଇ ଉଠନ୍ତି । ଖୁଡିକୁ ସାହାଯ୍ୟ କରିବାପାଇଁ ସମସ୍ତେ ବ୍ୟାକୁଳ ହୋଇପଡ଼ନ୍ତି । ଖୁଡି ଯାହା ଦରକାର କରେ ତାହା ସଙ୍ଗେ ସଙ୍ଗେ ଆସିଯାଏ । ଏପରିକି ସ୍ୱୟଂ ଗୁମାସ୍ତା ପର୍ଯ୍ୟନ୍ତ ଏ ଦରଟରେ ଅନୁକୂଳ ହୋଇପଡ଼ିବାର ଦେଖାଗଲା । ଖୁଡି ଏହି ଗୁମାସ୍ତାବାବୁଟିର କଥା ବି ଭୁଲେ ନାହିଁ । ସମସ୍ତଙ୍କୁ ସେ ଆପଣାର ପର ଦେଖେ । ପ୍ରତିଥର ଗୁମାସ୍ତାବାବୁଙ୍କ ପାଇଁ ଥାଳିରେ ସଜାଇ ରୁମାଲ ଢାଙ୍କି ପାଞ୍ଚଗଣ୍ଡା ଅଇଁଷା ପଠାଇଦଏ । ସ୍ୱୟଂ ତା ଆନନ୍ଦରେ ଗର୍ଜ୍ଜି କରି କହନ୍ତି—'ଲକ୍ଷ୍ମୀହାତଟାଏ ଦେଖିଲ ଏଥର' ।

ଜମିଦାରବାବୁଙ୍କ ଘରେ ଗୋଟାଏ ବହୁଦିନର ନୌକର ଅଛି । ନାମଟା କାର୍ତ୍ତିକିଆ । କିନ୍ତୁ ଯଥାର୍ଥରେ ସେ ନାମଟା ଖୁବ୍ କମ୍ ଲୋକେ କାଢ଼ିନ କରନ୍ତି । ଅଧିକାଂଶ ତାକୁ ପେଟୁକ୍ରମ ବୋଲି ଡାକନ୍ତି । ଲୋକଟା ଟିକିଏ ଉଦରସର୍ବସ୍ୱ, ତେଣୁ ଏ ବଦନାମ୍ । ଅରନ୍ଧାଦିନଠା ଧନ ସେ ଆଉ ଘର ଛାଡ଼ି ପାଟେଦ ଖୁଡ଼ୀ ବାହାରକୁ ଯାଏ ନାହିଁ । ସବୁବେଳେ ଖୁଡିର ପିଛା ଧରି ବୁଲୁଥାଏ । ଯେପରି ଗୋଟାଏ ନାଲାନ୍ତ କୁକୁର ପୋଷା ଶ୍ୱାନ । ତା ଦେଖି ଅନ୍ୟାନ୍ୟ ଚାକରବାକରମାନେ ଟାପରା କରନ୍ତି । ରତନ ବାରିକ କହେ—ସେଟାକୁ ଟୋକଠାଏ ଘାଟି ଦେଇପାରୁ ନାହିଁ ଖୁଡି ଅଗା, ଟାଭ ମାରି ହୋଇ ପଡ଼ନ୍ତା । ଦେହଅଧା ପିଠା ନ ହେବାଜଣୁ ଅଧେ ପଶିଯାଉଛି । ଭୀମଦେବହୋସ ହୁଙ୍କାର ଉଠେ— "ହଁ, ଅଗା ଖାଇ ଠାର ଦଅନ୍ତେ ଦେ, ଦୁଶଳ ପୁଅକୁ ଦେଖି ଦଅନ୍ତି ।" ନେଉଳୀ ମା ଦାସୀ କହେ—"ରଙ୍କା ପଣ, ରଙ୍କା ପଣ, ଖାଇବ ବୋଲି ପାଟିରୁ କଳସୀଏ ଲାଳ ଗଡ଼ୁଇଲାଣି, ମନୁନାହୁଁରେ ଉଙ୍କୁଣା ଟପେ ! ଅଗା ସାଆନ୍ତାଣୀ ତ ସମସ୍ତଙ୍କୁ ଦଉଛନ୍ତି, ଦେବେ ।

ଟିକିଏ ଧୈର୍ଯ୍ୟ ଧର । ମୁଁ ହୋଇଥିଲେ କେଉଁ କୁଣ୍ଡାରେ ସେ ଘୋଡ଼ାମୁହାଁଙ୍କୁ ଠେଙ୍ଗି ଦିଅନ୍ତି; ପୁଅର ଅନ୍ନଖାଇବା ଖୋଇ ଛାଡ଼ିଯାଆନ୍ତା ।” ଏସବୁ କହୁଛି, ସମାଲୋଚନା, ଠଟ୍ଟା, ବିଦ୍ରୂପ ପେନ୍ଟୁଲମ ବାରପଟ ପଛକୁ ପକାଇଦେଇ ଅନନ୍ୟମନା ହୋଇ ଏକ ଆଦର୍ଶର ଅନୁସରଣ କରି ସୁସ୍ଥିର ପଦେ ପଦେ ଲଢି ରହିଥାଏ । କହେ—ବୁଝିଲ ନା ସୁପ୍ରିଅପା, ଯେଉଁଗୁଡ଼ାକ ଈର୍ଷାରେ ଜରଜର ହୋଇ ମରନ୍ତି ସେଗୁଡ଼ାଙ୍କ କଥାରେ କାନଦେବା ଅଧର୍ମ । ଭଗବାନ୍ ସେଗୁଡ଼ାଙ୍କୁ ଭୁକିବାକୁ ସୃଷ୍ଟି କରିଛନ୍ତି, ଭୁକୁଥାନ୍ତୁ; ପେନ୍ଟୁଲମ୍ ରଥ ଚାଲିଥାଉ ।

ଏହିପରି ସ୍ଫୂର୍ତ୍ତିର ଅନେକ ପରିମାଣରେ ଭୟସଂକୋଚ ଦିନକୁ ଦିନ ଦୂର ହୋଇଯାଏ । ସୁଧାପ୍ରିୟାଙ୍କ ଘରେ ପ୍ରବେଶ କଲାପରେ ପ୍ରଥମେ ତାର ଯେତେ ପରିମାଣରେ କଡ଼ାକଡ଼ା ପାଖଛଡ଼ା ଭାବ ଥିଲା, ବର୍ତ୍ତମାନ ସେତେ ପରିମାଣରେ ନାହିଁ । ସେ ଆଉ ତେତେ ଦୂରେ ଦୂରେ ରହିବାକୁ ଚାହେଁ ନାହିଁ,—ରହିପାରେ ନାହିଁ ମଧ୍ୟ । ଟିକିଏ ଦୂରକୁ ଖସିଗଲେ, ସୁଧାପ୍ରିୟା ଯେପରି ତାକୁ ପାଖକୁ ଆକର୍ଷଣ କରି ଆଣନ୍ତି । ସୁଧାପ୍ରିୟାଙ୍କୁ ସେ ଅସ୍ୱୀକାର କରି ପାରେନା । ଏ ଗୃହ-ସଂସାରକୁ ନିଜର ବୋଲି ମନେ କରିବା ତା ପକ୍ଷରେ କଷ୍ଟକର ହେଲେ ସୁଦ୍ଧା, ଏହା ଏକାବେଳକେ ଅଲଗା ପର ତା ନିକଟରେ ପ୍ରତୀୟମାନ ହୁଏ ନାହିଁ । ଆଶ୍ରିତା ହେଲେ ମଧ୍ୟ ସେ ନିତାନ୍ତ ଘୃଣିତା ବା ଅବଜ୍ଞାତା ନୁହେଁ । ତେବେ ସେ ଦୟାର ପାତ୍ରୀ ହୋଇପାରେ । କିନ୍ତୁ ଦୟାର ପାତ୍ରୀ ହେବା ଛଡ଼ା ସେ ଏ ଦୁଆରଠାରୁ ଅଧିକ କଣ ଦାବୀ କରିପାରେ ? ସେହି ଦୟା ସେ ନିଜଗୁଣରେ ଆକର୍ଷଣ କରିବାକୁ ଚେଷ୍ଟାକରେ ଏବଂ ତାର ଚେଷ୍ଟା ବ୍ୟର୍ଥ ହୁଏ ନାହିଁ ।

ସୁଧାପ୍ରିୟାଙ୍କର ଦେହ ଯେତେବେଳେ ଯେମିତି ଅସୁସ୍ଥ ହୋଇପଡ଼ିଲେ ସୁଷମା ତାଙ୍କର ଯଥାସାଧ୍ୟ ଶୁଶ୍ରୂଷା କରେ । ପ୍ରାୟ

ସବୁବେଳେ ପାଖରେ ବସିଥାଏ । ରୋଗୀର ଶୁଶ୍ରୂଷା କରିବାରେ ଏତେ ନିଷ୍ଠା ଅନ୍ୟ ଲୋକଠାରେ କ୍ୱଚିତ୍ ଦେଖାଯାଏ । ସୁପ୍ରି ସେଥିରେ ଅଭ୍ୟସ୍ତ । ପିଲାଦିନରୁ ତାର ସେ ଅଭ୍ୟାସ । ତାର ମା ଥିଲେ ଚିରରୁଗ୍‌ଣା । ବାତରୋଗରେ ତାଙ୍କୁ ଅନେକ ସମୟରେ ଭୋଗିବାକୁ ପଡୁଥିଲା । ସୁପ୍ରି ଥିଲା ତାଙ୍କର ଏକମାତ୍ର ଶୁଶ୍ରୂଷାକାରିଣୀ । ମା ରୋଗ ବାଧକରେ ପଡ଼ିଲେ ଦିନ ନାହିଁ, ରାତି ନାହିଁ, ସେ ସବୁବେଳେ ବିଛଣାଟି ପାଖରେ ଜଗି ବସିଥାଏ, ବରାବର ସତର୍କ ଦୃଷ୍ଟି ଦେଇଥାଏ । ନିଜର ସୁବିଧା ଅସୁବିଧା କଥା ଭୁଲିଯାଏ । ଆହାର ନିଦ୍ରା ପର୍ଯ୍ୟନ୍ତ ସେ ବେଳେ ବେଳେ ତ୍ୟାଗ କରିଦିଏ । ଏଣୁ ତା ପକ୍ଷରେ ନୂଆକଥା ନୁହେଁ । ରାଧାପ୍ରିୟା ତାର ଏ ନିଷ୍ଠାପରତା ଦେଖି ଆଶ୍ଚର୍ଯ୍ୟ ହୁଅନ୍ତି । ରୋଗଶଯ୍ୟା ପାଖରେ ସୁଷମା ଦେବଦୂତିକା ପରି ବୋଧହୁଏ । ତାର ସ୍ନିଗ୍ଧ ମଧୁର ଦୃଷ୍ଟିରେ ରୋଗର ଯନ୍ତ୍ରଣା କମିଯାଏ । ରୋଗୀର ଦେହରେ ତାର କୋମଳ ହାତଟି ବାଜିଲେ ରୋଗ ଯେପରି ଯାଦୁବଳରେ ଉଡ଼ିଯାଏ । ରାଧାପ୍ରିୟା ତାର ଏ ଅସାଧାରଣ ଶକ୍ତି ଲକ୍ଷ୍ୟକରି ମୁଗ୍ଧ ହୁଅନ୍ତି । ରୋଗୀର ରୋଗଶଯ୍ୟା ପାଖରେ ସୁଷମା ପରି ଶୁଶ୍ରୂଷାକାରିଣୀ ଥିଲେ ଔଷଧର ବା ବୈଦ୍ୟର ପ୍ରୟୋଜନ ନାହିଁ ବୋଲି ତାଙ୍କର ମନେ ହୁଏ । ମନେ ମନେ ସେ ସୁଷମାର କେତେ ଯେ ପ୍ରଶଂସା କରନ୍ତି ତା କଥାରେ କହି ହେବ ନାହିଁ । ରୋଗଶଯ୍ୟାରୁ ଉଠି ରାଧାପ୍ରିୟା ଦିନେ ବିହ୍ୱଳପ୍ରାଣରେ କହି ପକାଇଲେ—'ସୁପ୍ରି ରେ ! ମାଆ ରେ ! ମୋର ଲକ୍ଷ୍ମୀପ୍ରତିମାଟି ରେ ! ବ୍ରାହ୍ମଣଘରେ ଜନ୍ମ ହୋଇ ପାରିଲୁ ନାହିଁ ମା ? ଭଗବାନ ତୋତେ ଏତେ ଗୁଣଗ୍ରାମ ଦେଇ ଶୂଦ୍ରଘରେ ଜନ୍ମଦେଲା' ଏହା କହି ସେ ସୁଷମାକୁ କୋଳକୁ ଟାଣିନେଇ ତାର ଲଲାଟ ଚୁମ୍ବନ କଲେ । ସୁଷମାର ମର୍ମଦେଶ ବଯୋଭେଦ କରି ଗୋଟିଏ କରୁଣ ନିଃଶ୍ୱାସ

ବାହାର ଆସିବାକୁ ଉପକ୍ରମ କଲା, ମାତ୍ର ସେ ତାକୁ ବଳପୂର୍ବକ ରୁନ୍ଧି ରଖିଲା ।

ସୁଷମାଠାରୁ ବିଦାୟ ନେଇ ସେ ଦିନ ହରଶଙ୍କର ଆସି ଗାଡ଼ି ଚଢ଼ିଲେ । ସେ ଦିନ ଗାଡ଼ି ଡେରିରେ ଥିଲା । ହରଶଙ୍କର ଷ୍ଟେସନରେ ପହୁଞ୍ଚିବାବେଳକୁ ଲାଇନ୍ କ୍ଲିଅର ଘଣ୍ଟାପର୍ଯ୍ୟନ୍ତ ହୋଇନାହିଁ । ତାଙ୍କୁ ଅପେକ୍ଷା କରିବାକୁ ପଡ଼ିଲା । ଇଣ୍ଟରକ୍ଲାସ ମୁସାଫିରଖାନାରେ ଗୋଟାଏ ଛାରପୋକମୟ ଅଦ୍ଭୁତ ଚେୟାରରେ ବସି ଟିକିଏ ବିଶ୍ରାମ ଲାଭର ଚେଷ୍ଟାକଲେ । କିନ୍ତୁ ଛାରପୋକଗୁଡ଼ାକର ଉତ୍ପାତରେ ଅସ୍ଥିର ହୋଇ ସେ ବିରକ୍ତ ମନରେ ଉଠିଲେ । ବେଡିଙ୍ଗ୍ ଖୋଲି ଅଧାଅଧି ଗୋଟାଏ କୋଣରେ ପାରିଦେଇ ତାହାର ଉପରେ ଅର୍ଦ୍ଧଶୟାନ ଅବସ୍ଥାରେ ଢଳି ରହିଲେ । ଅଙ୍ଗ ପ୍ରତ୍ୟଙ୍ଗ ବିଶ୍ରାମ ଲାଭକଲା କି ନ କଲା ତା ସେହି ଅଙ୍ଗ ପ୍ରତ୍ୟଙ୍ଗହିଁ ଜାଣନ୍ତି, କିନ୍ତୁ ମନଟା ତିଳାର୍ଦ୍ଧେ ବିଶ୍ରାମ ପାଇଲା ନାହିଁ । ଗଙ୍ଗାସାଗର ମୋଟରରେ ଆସୁ ଆସୁ ଯେଉଁ ଚିନ୍ତା ତାଙ୍କୁ ଘରୁ ଷ୍ଟେସନ ପର୍ଯ୍ୟନ୍ତ ଗ୍ରାସକରି ବସିଥିଲା, ଏହି ମୁସାଫିର-ଖାନାରେ ବି ତାହା ମୁସାଫିରଙ୍କୁ ତ୍ୟାଗ କଲା ନାହିଁ । ହରଶଙ୍କର ଭାବିଲେ ସୁଷମାର ପ୍ରତ୍ୟାଖ୍ୟାତ ସେହି ବିଦାୟ ଆଲିଙ୍ଗନର କଥା । ଯେତେ ଥର ସେ ସୁଷମା ନିକଟରେ ପ୍ରଣୟ ନିବେଦନ କରିବାକୁ ଯାଇଛନ୍ତି, ସେତେ ଥର ସେ ନିରାଶ ହୋଇଛନ୍ତି । ସ୍ପର୍ଶ କରିଦେବାକୁ ଦିଅନ୍ତି ନାହିଁ । ସ୍ତ୍ରୀର ଅଙ୍ଗସ୍ପର୍ଶ କରିବାକୁ ଯେପରି ସ୍ୱାମୀର ଅଧିକାର ନାହିଁ ! ଅଦର ଅପ୍ୟାୟନ କରିବାକୁ ଯେପରି ସେ ଯୋଗ୍ୟ ନୁହେଁ । ସାମାନ୍ୟ ଗୋଟାଏ ଅଙ୍ଗୁଳିସ୍ପର୍ଶ ପର୍ଯ୍ୟନ୍ତ ତାହାର ଦେହଟା ଯେପରି ତା ପକ୍ଷରେ ଧୃଷ୍ଟତା । ସୁନ୍ଦରୀ କାହିଁକି ତାଙ୍କୁ ଏପରି ଚକ୍ଷୁରେ ଦେଖେ ? ହରଶଙ୍କର ବ୍ୟଥିତ ପ୍ରାଣରେ ଭାବିଲେ—'ଅବଶ୍ୟ ସୁଷମା ନିଷ୍ପାପ

ସୁଷମା ତାର କଥାଗୁଡ଼ାକ ଶୁଣି ସେ ଅବସ୍ଥାରେ ସୁଦ୍ଧା ବେଶ୍ ଆମୋଦ ଅନୁଭବ କଲା । ଓଷ୍ଠାଧରପୁଟରେ କଅଁଳ ହାସ୍ୟରେଖା ଖେଳାଇ ସେ କୌତୁକ କରି ପଚାରିଲା—ତା ପରେ ?

ବାଉଳମା କହିଲା—ତା ପରେ 'ଗଡର' ଟେଣ୍ଟେଇ ବାଉଳମା ଦୁଇଟା ପେଟ ପୋଷିପାରେ ।

ସୁଷମା ହସି ହସି ପଚାରିଲା—ଏତେ ସାହସ ?

ବାଉଳମା ଠାଣି ହୋଇ ଜବାବ୍ ଦେଲା—ତା ଦେଖିବୁ ଯେଣି !

ସୁଷମା ମୃଦୁ ହାସ୍ୟ କରି କହିଲା—ହଉ ହଉ, ଏବେ ସବୁ ରହୁ । ଦରକାର ହେଲେ ବାହାର କରିବୁ । ଏଇକ୍ଷଣି ଥାଉ, ସେଇ ଘରେ ଯେ ମନିବେଗ୍ଟା ପଡ଼ିଛି, ସେଟା ଆଣ୍ ତ ।

ଘର ଭିତରକୁ ପ୍ରବେଶ କରି ବାଉଳମା ଅଣ୍ଡାଳି ହୋଇ ପଚାରିଲା—ଏଁ ! "ମନିଆବେଗ" କାହିଁ ମା ?

ସୁଷମା କହିଲା—ସେଇ ଯେ କାନ୍ଥ ପଟା ପଡ଼ିଛି, ଆଣ୍ ।

ବାଉଳମା ତା ଆଣି ସୁଷମାର ହାତରେ ଦେଲା । ସୁଷମା ଖୋଲି ଦେଖିଲା—ସେଥିରେ ନୋଟ, ଟଙ୍କା, ରେଜକି ମିଶି ଅନେକ ଟଙ୍କାଏ ଅଛି । ପ୍ରାୟ ତିରିଶ ଟଙ୍କାରୁ କମ୍ ନୁହେଁ । ସୁଷମା ସେଥିରୁ ଦୁଇଟା ଟଙ୍କା ବାହାର କରି ବାଉଳମାକୁ ଦେଇ କହିଲା—ଏଇ ନେଇଯା, ଗୋବିନ୍ଦ ପଧାନ ଦୋକାନରୁ ଯାହା ଯାହା ଦରକାର ସବୁ ନେଇଆସିବୁ ।

ବାଉଳମା ଚକ୍ଷୁ ଲଲାଟସ୍ଥ କରି ପଚାରିଲା—ସେ କାଗଜଗୁଡ଼ାକ 'ନୋଟ' କି କଣ କି !

ସୁଷମା ହସି ହସି କହିଲା—ହଁ ନୋଟ । ତୋ ଗାଣ୍ଠିଆରେ ଜକିଥା, ଓଳ ।

ବାଉଳିଆ ଚମକି ପଡ଼ି ଜବାବ ଦେଲା—ନୈ ମା ! ତାଙ୍କୁ ସମ୍ଭାଳିବ କିଏ ? ତମ ପାଖରେ ଥାଉ ।

ଏହା କହି ସେ ଟଙ୍କା ଦୁଇଟି ନେଇ କାନିରେ ବାନ୍ଧିଲା । ମନେ ମନେ କହିଲା—ରଜାର ପିଲା, ତାର କଣ ଅଭାବ ? ଗୁପ୍ତେ ଗୁପ୍ତେ ଟୁଙ୍କିଦେଇ ଯାଉଛନ୍ତି, ବସି ଖାଉଥା । ଆଉ ରାଣୀର ବି ମନମୋହିନେବା କରାମତି ବେଶ୍ ଅଛି । ହାୟ ହାୟ, ନାଥ ଦାରପୋଡ଼ କାନ୍ଦଣା ବିନା ସବୁ ଗୋଳମାଳ କରିଦେଲା । ନହେଲେ, ରାଣୀ ଠିକ୍ ରାଣୀହୋଇ ବସିଥାନ୍ତା ।

ଏହିପରି ଭାବୁ ଭାବୁ ବାଉଳିଆ ହଠାତ୍ ମୁହଁ ପଛକୁ ବୁଲାଇ ଜିଭ କାମୁଡ଼ି ପକାଇଲା । ନିଜକୁ ଶାସନାକରି ମନେ ମନେ କହିଲା—ଆଲୋ ମା ! ମୁଁ କଣ ଭାବୁଛି ଲୋ ! ବଡ଼ ଘରର ବଡ଼ କଥା, କେତେବେଳେ ଗୁପ୍ତଟା ଜାଣିଜିବ, କଣ ଢୋଲ କଣ ବାହାର ପଡ଼ିବ, ଅଳୁ ଲୋଲୁଁ ଲୋଲୁଁ ମହାଦେବ ବାହାରିବ । ମୁଁ ଦୁଃଖୀ ଲୋକ, ମୋର ସେ କଥାରୁ କଣ ଯାଏ ଆସେ ଲୋ ମା ! ଚୁପ୍ ଚୁପ୍-ଚୁପ୍ ।

ଏହିପରି ଭାବି ବାଉଳିଆ ଠିକ୍ କଲା—ସେ ଯାହା ଯାହା ଜାଣିଛି, ତା କାହାର ପାଖରେ କିଛି ଗୁପ୍ତ ଖୋଲି କହିବ ନାହିଁ । ବାବୁ ବଡ଼ ମହତ ଲୋକ, ରାଣୀ ଝିଅଟି ବି ବଡ଼ ସୁନ୍ଦର, ଦେଖିଲେ ମାନେ ମାୟା ହୁଏ । ସେ ଦୁଇଟି ପ୍ରାଣୀର କଥା ସେ ନିଜେ କାହାରିକୁ କିଛି କହି ନିଷ୍କଳଙ୍କ ପ୍ରତିମା ଦେହରେ କଳଙ୍କ ବୋଳିବ ନାହିଁ ।

ବାଉଳିଆ ଘର ଦ୍ୱାର, ମେଲା ଅଗଣା ସବୁ ଝାଡ଼ି ପହରେଇ ସଫା ସୁତୁରା କରିବାକୁ ଲାଗିଲା । ଶାନ୍ତ ଶିଷ୍ଟ ସେ ଘର ଧନ୍ଦା ସାରି ସେହି ଦୋକାନୀଙ୍କୁ ବାହାରିବାପାଇଁ ତତ୍ପର ହୋଇପଡ଼ିଲା ।

ସୁଧାମା ଧାରି ଧସୁ ଧସୁ ଭାବିବାକୁ ଲାଗିଲା—ଆଗ ବଡ଼ାଙ୍କ ଘୃଣାର କଥା । ମନରେ ବସ ଅପୂର୍ବ ଦୃଢ଼ତା ଧରି ସେହି

ବୈଶିଷ୍ଟ୍ୟମୟ ଜୀବନପଥରେ ନିର୍ଦ୍ଦ୍ୱନ୍ଦ୍ୱରେ ଚାଲିବାକୁ ସଙ୍କଳ୍ପ କଲା । ଯାହାର ଅଲକ୍ଷିତ ହସ୍ତ ତାକୁ ସଂସାରରେ ଟାଣିନେଇ ଚାଲିଛି, ତାହାର ତାକୁ ଯେଉଁଆଡ଼କୁ ନେବାର ଇଚ୍ଛା, ସେ ସେଆଡ଼କୁ ନେଉ । ସେଥିରେ ସେ ବିଚଳିତ ହେବ କାହିଁକି ?

ଦିନ ପରେ ଦିନ କଟିଯିବାକୁ ଲାଗିଲା । ଦିନ ସମସ୍ତଙ୍କର କଟେ । ରଜାର କଟେ ମୂଲିଆର ବି କଟେ । ସୁଖୀର କଟେ, ଦୁଃଖୀର ବି କଟେ । ସନାଥର କଟେ, ଅନାଥର ମଧ୍ୟ କଟେ । ଏହିଠାହିଁ ଏ ଦୁନିଆର ସାନ୍ତ୍ୱନାର କଥା । ତେବେ କାହାର ହର୍ମ୍ୟକୋଳରେ କଟେ, କାହାରବା ପର୍ଣ୍ଣକୁଟୀରରେ କଟେ । କାହାର ସ୍ୱର୍ଣ୍ଣପଲଙ୍କରେ ଦିନ ଯାଏ, କାହାର ବା ତୃଣଶଯ୍ୟାରେ ଯାଏ । ଏଇମାତ୍ର ପ୍ରଭେଦ । ଏଇ ପ୍ରଭେଦଟିକୁ ନେଇ ସୁଷମାର ଦିନ ଗୁଡ଼ିକ ବେଶ୍ କଟିଯିବାକୁ ଲାଗିଲା । ବାଉଳିମା ତାର କଡ଼େ କଡ଼େ ଥାଏ, ନିଜର ସ୍ତନ୍ୟପାଳିତ କନ୍ୟାଟି ପରି ତାକୁ ସ୍ନେହକରେ, ସ୍ନେହମମତାର ବନ୍ଧନ ପ୍ରଗାଢ଼ରୁ ପ୍ରଗାଢ଼ତର ହୋଇଉଠେ, ମା-ଝିଅ ପରି ଦୁଇପ୍ରାଣୀ ଆନନ୍ଦରେ ଚଳିଯାନ୍ତି । ଭବିଷ୍ୟ ଭବିଷ୍ୟର କଥା ବୁଝନ୍ତି । ଜଣେ ଆଉ ଜଣଙ୍କର ମନ ନେବାକୁ ସବୁବେଳେ ଚେଷ୍ଟିତ ଥିଲେ, ସଂସାରରେ ଯେଉଁ ଶାନ୍ତ ସୁଧାର ପ୍ରବାହ ଲୀଳାୟିତ ଗତିରେ ବୋହିଯାଏ, ଏହି ଦୁଃଖୀର ପର୍ଣ୍ଣକୁଟୀରରେ ତାହା ଦିନ ପରେ ଦିନ ବୋହିଯାଉଥିଲା । ବାଉଳିମା ସୁଷିର ଜୀବନ-ଇତିହାସର ଗୁପ୍ତରହସ୍ୟଟି କାହାରି ପାଖରେ ଖୋଲି କହେ ନାହିଁ । ମନରେ ଭୟ—କାଳେ ସେହି ସ୍ନେହମୟ ଯୁବକ ଯୁବତୀ ଦୁଇଟିର ଚରିତ୍ରରେ ଆଞ୍ଚ ଲାଗିବ । ପ୍ରତିବେଶିନୀମାନେ ତାକୁ ଅନେକ କଥା ପଚରା ଉଚରା କରନ୍ତି, ଫାନ୍ଦରେ ପକାଇ ଦେଲେ ଅଧେ ଗୋଟାଏ କଥା ପେଟରୁ ବାହାର କରିନେବାକୁ ଦୁଷ୍ଟପ୍ରକୃତିର ଲୋକେ ମଧ୍ୟ ଚେଷ୍ଟା କରନ୍ତି, ମାତ୍ର ବାଉଳିମା ସେ ବିଷୟରେ ବଡ଼

ସତର୍କ ଥାଏ । ତଥାପି ପ୍ରତିବେଶୀ-ପ୍ରତିବେଶିନୀମାନେ କ୍ୱାଚେ କ୍ୱାଚେ ବେଳେ ଅଟ୍ୟେ ଫୁସ୍ ଫୁସ୍ ହୁଅନ୍ତି । ଦୁଇଟା ଲୋକ କେମିତି ଚଳୁଛନ୍ତି, ଏହି କଥାଟା ଭାବି ଭାବି ଲଟଣେ ଅଧେ ଲୋକଙ୍କୁ ନିଦ୍ରା ହୁଏ ନାହିଁ । କେହି ଅବା କହେ ବଡ଼ଲୋକର ଅଶ୍ରୟରେ ଅଛି, ଅଭାବ କଣ ? ଅନ୍ୟ କେହି ବିଦ୍ରୂପ କରି ତାର ଜବାବ ଦିଏ—'ହଁ ! ଏମିତି ଖାଲି ଗାଲି ଆଶ୍ରୟଦେବା ଲୋକ ଦୁନିଆରେ ମୁଁ ତେର ଦେଖିଛି ।' ଗୋଟାଏ କଥା ସେମାନଙ୍କୁ ବିଶେଷ ବ୍ୟସ୍ତ କରିପକାଏ । ତା ହେଉଛି ଏହି ଯେ, ଯେଉଁ ଲୋକର ସେ ଆଶ୍ରିତା, ସେ କଣ ଦେଖୁନାହିଁ ଯେ ଝିଅଟାର ବିବାହର ବୟସ ଅତିକ୍ରମ କରିଯାଉଛି । ଭିତରର କଥାଟା କଣ ତାହା ଅନୁମାନ କରିବାକୁ ଚେଷ୍ଟାକରି କେତେଲୋକ ଘର୍ମାକ୍ତ ହୋଇଉଠନ୍ତି । ବାଉଳିମାକୁ ପଚାରିଲେ ସେ ଫାଙ୍କିଦେଇ କହେ— ହଃ, ତହୁଁ ବଳି ତହୁଁ ବଳି ଯୁବତୀ ଝିଅ ଲୋକମାନଙ୍କ ଘରେ ରହିଛନ୍ତି । ସରିଙ୍କର ଏମିତି କେତେଗୁଡ଼ାଏ ବୟସ କି ? ବାହା ଲଗନ ପିଟିଲେତ ହୁଏ, ପରଜାପତି ଘଟପ୍ରୁବ, ସେ କଣ କମ୍ କଥା ! ଯୋଗାଡ଼ ଲାଗିଛି । ଦିନେ ହବ ।

---

## ଊନବିଂଶ ପରିଚ୍ଛେଦ

ଦିନ ପରେ ଦିନ, ମାସ ପରେ ମାସ, ଏହିପରି ଗୋଟାଏ ପୁରାବର୍ଷ କଟିଗଲା । ହରିଶଙ୍କରଙ୍କର କୌଣସି ଖବର ନାହିଁ । ସୁଚିତ୍ରିର ତତ୍ତ୍ୱନେବାକୁ ଆସିବା ଦୂରରେଥାଉ, ଖଣ୍ଡିଏ ଚିଠି ବି ଦିଅନ୍ତି ନାହିଁ । ସେହି ଯେ ସେଦିନ ହରିଶଙ୍କର ଗୃହମଧ୍ୟରେ ପ୍ରବେଶ ସୁଦ୍ଧା ନ କରି ବାହାରୁ ବାହାରୁ ଚାଲିଗଲେ, ତା ପରେ ଆଉ ଦେଖାନାହିଁ, ଦର୍ଶନ ନାହିଁ, କୌଣସି ସମ୍ପର୍କହିଁ ନାହିଁ । ବାଉଳିମା ଦିନେ ଦିନେ ଅଷ୍ଟୁଆ

ହୋଇ ପଡ଼ିଲେ—ଷଣି ! ବାବୁ କିଛି ଚିଠିପତ୍ର ଦେଇଛନ୍ତି ? ସୁନ୍ଦରମା କହେ—କାହିଁ ? ତୋତେ କି ଚିଠି ଦେବାକୁ କହିଯାଇଥିଲେ ? ବାଉଳୀମା ଅଧୀର ଅସ୍ଥିର ହୁଏ । ଉତ୍ତର ଦିଏ—ମୋ ପାଖରେ ଥାଇ ତାଙ୍କର କେତେବେଳେ କାହା ପାଇଁ ମୋହ ମା ? ମୁଁ ତ ଜାଣେ ଆଁଠି ଦେଖୁଛୁ । ତମେ ବି ଚିଠିଏ ଭାଇଙ୍କୁ ଡାକିଲ ନାହିଁ, ସେ ବି ଭାଇଙ୍କୁ ପଠିଲେ ନାହିଁ । ଏସବୁ କଣ ଷଣି ?

ସୁନ୍ଦରମା ବଣୀ ଜବାବ ଦେଇ କହେ—ତୁ କାହିଁକି ଏତେ କଥା ଭାବୁଛୁ ବାଉଳୀମା ? ବାବୁଙ୍କ ପାଇଁ କଣ କୌଣସି କଥା ଅଟକି ଯାଇଛି ? ଏଠି ଆସି ସେ କଣ କରିବେ ?

ବାଉଳୀମା ତଟସ୍ଥ ହୋଇ କହେ—କି କଥା କହୁଛ ଷଣି ! କିଛି କହିବାର ନାହିଁ ବୋଲି, କେତେ କଣ ଏକାବେଳକେ ଶାପୋଷ ଦଅନ୍ତି ? ଏ କି ଧାରା !

ସୁନ୍ଦରୀ କହେ—ସେ ସବୁ କଥା ଭାବି କଣ ଲାଭ ବାଉଳୀମା ? ସେଥିପାଇଁ ତୁ ବ୍ୟସ୍ତ ହେଉଛୁ କାହିଁକି ? ତୋର କିଛି ଅସୁବିଧା ହେଉଛି ?

ବାଉଳୀମା ଉତ୍ତର ଦିଏ—ସେଇ କଥା ତମର ଗଲାନାହିଁ ଷଣି ! ମୋର ପୁଣି କି ଅସୁବିଧା ମ ? ମୋ ପେଟକୁ କଣ ଉପାସ ରହୁଛି ? ମୁଁ କଣ ଖାଇବାକୁ ପାଉନାହିଁ, ନା ପିନ୍ଧିବାକୁ ପାଉନାହିଁ ? ନାଁ, ତମଠାରୁ ଅଧିକ କେହି ମୋର ନାଧାମାନ କରିବ ? ସେ କଥା କି କଣ ମୁଁ ଭାବନା କରୁଛି ଷଣି ! ଏହା କଣ କି—ଦିନେ ନୁହେଁ, ଅଠେ ନୁହେଁ, ମାସେ ନୁହେଁ ପକ୍ଷେ ନୁହେଁ; ଆଜକୁ ବର୍ଷେରୁ ଉପର ହୋଇଗଲା । ବାବୁଙ୍କର ପତ୍ର ନାହିଁ । ଖଣ୍ଡେ ଭାଷା ନାହିଁ, ଚିଠିଏ ନାହିଁ । ମଣିଷର ତ ପୁଣି ଦୟା-ମାୟା ଅଛି । "ହଁ ଆମର ସବୁ କୁଶଳ, ତମକୁ ଠାକୁରେ କୁଶଳରେ ରଖିଛନ୍ତି ତ ? ତମର ଦେହ ମୁଣ୍ଡ ଭଲ

ଣା''—ଏମିତ କରି ଦାଆଁଡ଼ ଲେଖି ଖାଲଣ୍ଡ 'ପୁଷ୍ଟକାଠ୍' ପୋପାଡ଼ ଦେଇ ପାରୁ ନାହାନ୍ତି ? ଏକା ଭୋଳାମହେଶ ଲୋ ମା !

ବାଉଳୀମାର କଥାଶୁଣି ସୁନ୍ଦରି ହସ ଲାଗେ । ସେ କହେ— ସତେତ ! ଭାରି ଅଭଦ୍ର ବାବୁଟି ! ବାଉଳୀମାର ଦାମ୍ପମୁଣ୍ଡ କଥା ଥରେ ବୁଝିବା ଶୁଣିବା, ଭଲମନ୍ଦ ପଚାରିବା, କିଛି ନାହିଁ—ମହେଶ ଠାକୁର କଣଟି ବସି ଗଞ୍ଜେଇ ନିଶାରେ ଲାଗିଯାଇଛନ୍ତି !

ସୁନ୍ଦରି କଥା ବୁଢ଼ୀଙ୍କ ଏପରି ମୁହାଁଭଙ୍ଗିଆଳ କହେ ସେ ବାଉଳୀମା ସ୍ୱର ଲମ୍ବେଇଦେଇ ମନ୍ତବ୍ୟ ଛାଡ଼େ—ଆ ମଲା ! ସବୁବେଳେ ତମର ଠାଉଳି !

ଦାନେ ଦାନେ ବାଉଳୀମା ଅତି ନିକଟକୁ ଘୁଞ୍ଚିଆସି ଫୁସ୍ ଫାସ୍ କରି କହେ—ସତୀ ! ସତ କହୁଛ, ମୋ ମୁଣ୍ଡଖାଇବ, ବାବୁଙ୍କୁ କିଛି କଡ଼ାକଥା କହୁଛ ?

ସୁନ୍ଦରି ବିରକ୍ତ ହୋଇ ଜବାବ ଦିଏ—ଦୂର୍ ଯୋଡ଼ାମୁହାଁ ! ସବୁବେଳେ ''ବାବୁ—ବାବୁ'' ବୋଲି ମଲ, ଆଉ ଲୋକଙ୍କୁ ଦେଖି ଭରି ମାଉଛ ! ବାବୁ ପାଇଁ ତୋର ପ୍ରାଣ କାହିଁକି ଛୁଡ଼ିଯାଉଛିଲୋ ବାଉଳୀମା ?

ବାଉଳୀମା ଟିକିଏ ଦବିଯାଇ କହେ—ବୁଝିଲ ନାହିଁ, ବଡ଼ଘରର ବୁଅଝିଅ ମା, ରଙ୍ଗାବାଦଶାର ଜୁଆଇଁ । ଯାନିରୁ ଟିକିଏ ଭଳ ଖାଇଗଲେ ଗଲା । ତମ ଆମଭଳି ଦୁଃଖୀ-ରଙ୍କିଆ କୁଟୁମ୍ବ ଯେ ପାଞ୍ଚପଦ ଖାଉ ଖାଉ କରି ହଙ୍କାରି ପକେଇଲେ ଦରଦାମ୍ଭ କାଟିପକାନ୍ତି । ପରେ ଅତଏ ଗଉଡ଼ପୁଅ ସେମାନଙ୍କ ଦାମ୍ଭରେ ଗୁଏ ଖାଇ ଲାଗିଯାଏ ।

ସୁନ୍ଦରି ଥଣ୍ଡାକରି କହେ—ଓହୋ ! ବୁଝିଲି ! ଖାଲି ଦାମ୍ଭକୁ ବାଧା ଲାଗିଯାଏ ପରା ! ହଉ ଯାଉ ପଛେ ସେପରି ନଜାଣିବ ଲୋ ମା !

ବାଉଳୀମା ଏହାଶୁଣି ଅନ୍ତରେ ସନ୍ଦେହ କରି ବସେ । ପଚାରେ —ଗ୍ରିମି ! ସତେ କିଛି କହୁଛ ?

ସୁପ୍ରିତି ଗମ୍ଭୀର ହୋଇ ତାମସା ଦେଖିବାମାତ୍ରେ କହେ—ନ କହିବ ଡାହାଁକି ? ତାଙ୍କ ଘରକୁ ସେ ବଡ଼, ଆମ ଘରକୁ ଆମେ ବଡ଼ । ଏତେ ଡର କାହାଁକି ?

ବାଉଳୀମା ସୁପ୍ରିତିର ମୁହଁକୁ ଦଲ୍ ଦଲ୍ କରି ଅନାଏ । ମନଟା ତାର ଅନ୍ଧକାରରେ ପୂରିଉଠେ । ସେ ଭାବେ—କଣ ହେଲା ? ସୁଷମା ତ ମାଛିକୁ ମର ବୋଲି କହିବା ଝିଅନୁହେଁ, ତା ତୁଣ୍ଡରୁ ପୁଣି କି କଥା ବାହାରି ପଡ଼ିଲା ? ମାଣିଚନ୍ଦ୍ରଙ୍କ ମାନ ମାରି ବସିରହିଲେ । ଏହା ଭାବ ସେ ଖୁବ୍ ଭୟଭିତ ହୁଏ ।

ସୁଷମା କୌତୁକ କରି ପଚାରେ—ତେବେ ଆଉ କଣ ବାଉଳୀମା ? ତାଙ୍କ ଗୋଡ଼ତଳେ ପଡ଼ିଥାନ୍ତି ?

ଏହା କହି ସେ ଖଲ ଖଲ ହୋଇ ହସିଉଠେ । ବାଉଳୀମା ବୁଝିପାରେ—ସବୁ ମିଛ । ସୁପ୍ରିତି ଥଟ୍ଟା କରୁଛି ।

ଦିନେ ବାଉଳୀମା ଗୋଟିଏ ପୋଷ୍ଟକାର୍ଡ ପାଇଁ ବଗିଚା କରି କାଟେଣି ଲୋକହାତରେ ପଇସା ପୁରିଦେଲା । ପୋଷ୍ଟ ଅଫିସଟା ତିନିମାଇଲ୍ ବାଟ । ଲୋକଟି ପୋଷ୍ଟକାର୍ଡ ଖଣ୍ଡିଏ କିଣିଆଣି ତା ହାତରେ ଦେବାପରେ ବାଉଳୀମା ତରତର ହୋଇ ଆସି ସୁପ୍ରିତି ପାଖରେ ହାଜର ହୋଇଯାଇ କହିଲା—ଏଇ ଆଣିଛି ଗ୍ରିମି !

ସୁପ୍ରିତି ଖଣ୍ଡିଏ ରାମାୟଣ ପୋଥି କୋଳରେ ଧରି ତନ୍ମୟ ହୋଇ ପଢୁଥିଲା । ରାମ ଜାନକୀ ଦେବୀଙ୍କୁ ବର୍ଜନ କରିଛନ୍ତି, ହତଭାଗିନୀ ଆଜି ବନବାସିନୀ । କେତେବଡ଼ ରାଜ୍ୟର ରାଣୀ କେତେଡ଼ ଘରର କୁଳବଧୂ, କେତେଡ଼ ସତୀ ସୁଲକ୍ଷଣୀ ! କିନ୍ତୁ ଆଜି ତାଙ୍କର କି ଅବସ୍ଥା, କି କଷଣ ! ଏତେ ବଡ଼ ସ୍ନେହମୟ ସ୍ୱାମୀ ରାମଚନ୍ଦ୍ର ସୀତାଠାକୁରାଣୀଙ୍କୁ

ଝୁଲ୍‌ପାଉଛନ୍ତି,—ନିର୍ବାସିତ କରି ନେଉଛନ୍ତି । ହାୟ, ହାୟ, ଦେବତା ବି ଏତେ କଠୋର ହୁଅନ୍ତି ! ଦେବୀ ଠାକୁରାଣୀଙ୍କ ଜୀବନରେ ବି ଏମିତି ଗୋଟାଏ ଗୋଟାଏ ଦୁଃଖର ଦିନ ଆସେ ! ଛାର ମନୁଷ୍ୟର କଥା ବା କଣ !

ଏହା ଭାବି ସୁଚିତ୍ରି ଜାନକୀଦେବୀଙ୍କ ଉପରେ ଅସୀମ ସହାନୁଭୂତି କାତର ହେଉଥିଲା, ରାମଚନ୍ଦ୍ରଙ୍କ ଉପରେ ଭୟଙ୍କର କ୍ରୋଧ ଜଳୁଥିଲା । ଠିକ୍ ଏହାପରେ ସମୟରେ ଦାଈଲମା ଆସି ପାଖରେ କହିଲା—ଏଇ ଆଣିଛୁ ରାଣି !

ଏତେବଡ଼ ରସମୟ ଉପାଖ୍ୟାନର ମଧ୍ୟସ୍ଥଳରେ ରସଭଙ୍ଗ ଘଟିବାରୁ ସୁଷେ ବିରକ୍ତହୋଇ କହିଲା—କଣ ଦେଖା ଆଣିଛୁ ଲୋ ପୋଡ଼ାମୁହିଁ ?

ଦାଈଲମା ଜବାବ ଦେଲା—ଏ ରାଣି ! ଏ ମା ! ଏ କଲମ ଲେଖି ପିଞ୍ଜିଦାଅ ଭଲ, ତମ ହାତ ଗୋଡ଼ ଧରୁଛି ।

ଏହା କହୁଁ କହୁଁ ସେ ସୁଷିରେ ୯୦ଟି ଧରି ପକେଇଲା । ସୁଷି ଅବାକ୍ ହୋଇ ଚାହିଁ ରହିଲା । କି ପାଗଳାଟା ! ତାର ସମସ୍ତ କଳ୍ପ ମୂର୍ତ୍ତିକ ମଧ୍ୟରେ ଉଡ଼ିଗଲା । ସେ ପଚାରିଲା—କା ପାଖକୁ ଲେଖିବାକୁ କହୁଛୁ ଦାଈଲମା ?

"ବାବୁଙ୍କ ପାଖକୁ ରାଣି, ଆଉ ପୁଣି କାହା ପାଖକୁ ?"

ସୁଷମା ହସିଦେଇ କହିଲା—ଦୂର୍ ପାଗଲୀ ! ତାଙ୍କର ଠିକଣା କଣ ଜଣାଅଛି ?

ଦାଈଲମାର ବୁଦ୍ଧି ଗୋଳିଆ ହୋଇଗଲା । ସେ ଭାବିବାକୁ ଲାଗିଲା—ଏଥିକୁ କି ଉପାୟ ! ଏ-ତ କୁହାପୁଛା ଖୋସାମଦ୍ ଦରାମଦ୍ କରି ଯୋଡ଼୍‌ଜୋର୍ ଗଣ୍ଡେ ଯେ ଆଣିଥିଲା, ସେ ଖଣ୍ଡଟା କଣ

ମ.ଟି ହୋଇଯିବ ? ହଠାତ୍ ତା ମୁଣ୍ଡରେ ଗୋଟାଏ ବୁଦ୍ଧି ପଶିଗଲା ।
ସେ କହିଲା—ତାହେଲେ ରାଣି, ଗୋଟାଏ କାମକଲେତ ହୁଅନ୍ତା ?

ସୁଷମା କୌତୁହଳୀ ହୋଇ ପଚାରିଲା—କ କାମଲୋ ?

ବାଉଳମା ଜବାବ୍ ଦେଲା—ଏତେ ଲୋକ 'ଚେରଙ୍ଗ' କରି ଛାପା ଦେଉଛନ୍ତି, ତାଙ୍କରତ ଠିକ୍ ପର ପହଞ୍ଚିଯାଉଛି । ସେମିତଟାଏ କରିଦେଲେ ହୁଅନ୍ତା ନାହିଁ ?

ସୁଷମା ଠୋ ଠୋ ହୋଇ ହସି ଉଠିଲା । କହିଲା—ଦୂର୍ ଅଲାଗୀ ! ଠିକଣା ଜାଣିଥିଲେ 'ଚେରଙ୍ଗ୍', ସରଙ୍ଗ୍ ସବୁ ହୁଏ, ନ ଜାଣିଥିଲେ କିଛି ହୁଏ ନାହିଁଲୋ ?

ତା ପରେ ସୁଷମା ତାକୁ ବୁଝେଇ ସମଝେଇ କହିଲା— ବାଉଳମା ! ତୁ ଏମିତ ହ'ନା । ବାବୁତ ଚିଠି ନେଉନ୍ତି । ଖରଚପତ୍ର ଦେବା ଦରକାର ଥିଲେ ସେ ଦଅନ୍ତେ । ଯେତେବେଳେ ଦରକାର ପଡ଼ିବ, ସେତେବେଳେ ନିଶ୍ଚେ ଦେବେ । ଆଜି ତୁ ସେ ପୋଷ୍ଟକାର୍ଡଟା ରଖିଦେଇଥା, ପରେ ଠିକଣା ବୁଝି ଚିଠି ଲେଖିବା ।

ଅଗତ୍ୟା ବାଉଳମା ନିଃଶ୍ୱାସଟାଏ ପକାଇ ପୋଷ୍ଟକାର୍ଡଖଣ୍ଡ ନେଇ ସାଇତ ରଖିବାକୁ ଗଲା । କିନ୍ତୁ ତାର ମନ ପ୍ରବୋଧ ମାନିଲା କି ନାହିଁ କିଏ ଜାଣେ ।

ପାହୁନା କିଛିଦିନ ଗଡ଼ିଗଲା । ବର୍ଷ ପୂରିଯାଇ ଦୁଇମାସରୁ ଅଧିକ ହେବାକୁ ବସିଲା । ତଥାପି ବାହାରର କୌଣସି ଲୋକ ଖୋଜଖବର ନେଲେ ନାହିଁ । ବାଉଳମା ଭଲ ଭଲ ନିରସ୍ତ ହୋଇପଡ଼ିଲା । ହୁଏତ ସେସବୁ କଥା ଭାବିବାକୁ ଯାଏନାହିଁ । ଥରେ ଅଧେ ତାର ଅବାଧ୍ୟ ମନଟା ଶାସନରୁ ଖସିଯାଇ ତାହା ଭାଲବାସିଲେ ସେଥି ପ୍ରତି ତାକୁ ଦୃଢତା ସହକାରେ ବାଟକୁ ନେଇଆସେ । ତାକୁ ବୁଝେଇଦେଇ କହେ—ଏ ଜନ୍ମରେ ସେଇଟା ଭାବିବାର କଥା

ନୁହେ ସେଠା ଭୁଲିବାକୁ ବସୁଛୁ କାହିଁକି ? ଏ ଦୁର୍ବଳତା ମାର୍ଜନାର ଯୋଗ୍ୟ ନୁହେଁ । ସେଠା ସର୍ବଥା ଛାଡ଼ିବାକୁ ହେବ । ମନକୁ ଏହି ମହାମାନ୍ୟ ହିତୋପଦେଶ ଦେଇଁ ଦେଇଁ ହରଶଙ୍କରଙ୍କ ବିଦାୟବାଣୀ ତାର ସ୍ମୃତିପଥରେ ଉଦିତ ହୁଏ । "ମନୁଷ୍ୟର ସମସ୍ତ ଅଭିଳାଷ ଗୋଟାଏ ଜୀବନରେ ପରିପୂର୍ଣ୍ଣ ହୁଏ ନାହିଁ, ସୁଷି !"—ଏହି ତାଙ୍କର ଶେଷକଥା । ଏହି ଉପଦେଶ ତାର ଶିରୋଧାର୍ଯ୍ୟ । ଏଇଠାହିଁ ଖାଣ୍ଟି ସତ୍ୟ,—ବେଦବାକ୍ୟଠାରୁ ବଳି ମୂଲ୍ୟବାନ୍ । ସୁଷି ଏ ଜୀବନରେ ସେପରି ଅଭିଳାଷ ରଖିବାକୁ ଚାହେଁନାହିଁ । ଜୀବନାନ୍ତ ପର୍ଯ୍ୟନ୍ତ ତାକୁ କପଟ ଅବସ୍ଥାରେ ବହୁ କାଳ କାଟିବାକୁ ପଡ଼ିବ ତା ସେ ନିଜେ ମଧ୍ୟ ସ୍ପଷ୍ଟାକ୍ଷରରେ ହରଶଙ୍କରଙ୍କୁ ଶୁଣାଇ ଦେଇଛି । ସୁତରାଂ ସେ ପ୍ରଶ୍ନର ମୀମାଂସା ହୋଇସାରିଛି । ଆଉ କିଛି ବାକିନାହିଁ । ସୁଷିର ଜୀବନରେ ସେଇଠାହିଁ ଶେଷ ତୃପ୍ତି ଏବଂ ସେହି ତୃପ୍ତି ରକ୍ଷାରେହିଁ ତାର ମୁକ୍ତି ।

ଏମିତି କରି ସେ ହରଶଙ୍କରଙ୍କ କଥା ଭୁଲିବାକୁ ଚେଷ୍ଟାକରେ କିନ୍ତୁ ଆଉ ଜଣକର କଥା ସେ ଭୁଲିପାରେ ନାହିଁ, ଭୁଲିବାକୁ ଚେଷ୍ଟାମଧ୍ୟ କରେନାହିଁ । ସେ ଜଣକ ରାଧାପ୍ରିୟ । ତାର ରାଧାପ୍ରିୟଙ୍କୁ ଭୁଲିବାକୁ ଇଚ୍ଛା ହୁଏ ନାହିଁ । ଅନେକ ସମୟରେ ସେ ତାଙ୍କ କଥା ମନେ ପକାଏ ଏବଂ ସେଥିରୁ ଆନନ୍ଦପାଏ । ଆଜିକାଲି କିଏ ତାଙ୍କୁ ତରଣ ଚିକ୍କଣ ଖଣ୍ଡ ଲେଖାଏଁ ପାନ ଭାଙ୍ଗି ଦେଉଛି ? ମନୋମତ କରି ଭାଙ୍ଗିଦେଉଛନ୍ତି ତ ? ହଁ, ତା ନ ଦେଉଥିବେ କାହିଁକି ? ସବୁଦିନେ କଣ ସୁଷି ତାଙ୍କ ପାଖରେ ଥିଲା ? ଅନ୍ୟଲୋକ ତ ପୂର୍ବୁ ଭାଙ୍ଗି ଦେଉଥିଲେ । ଏହିପରି କେତେ ତର୍କ ତା ମନରେ ଉଠେ ଏବଂ ସଙ୍ଗେ ସଙ୍ଗେ ସମସ୍ତ ତର୍କର ମୀମାଂସା ହୋଇଯାଏ । କିନ୍ତୁ ରାଧାପ୍ରିୟଙ୍କ ସ୍ମୃତି ସେ ତର୍କ ଓ ମୀମାଂସାର ବହିର୍ଭୂତ ପରି ବୋଧହୁଏ । ଥରେ ଥରେ

ପ୍ରାଣଭିତରେ ଥାଇ କିଏ ଯେପରି ତାକୁ ଠେଲାଟାଏ ଦେଇ କହେ—ଚାଲ୍ ଚାଲ୍, ରାଧାପ୍ରିୟାଙ୍କ ପାଇଁ ଦିଖଣ୍ଡ ପାନ ଭାଙ୍ଗି ଦେଇ ଆସିବୁ ଚାଲ । ସେ ଚମକି ପଡ଼େ । ନିଜର କଳ୍ପନା ଆଜି ତା ସହିତ ପରିହାସ କରୁଛି, ଏହା ବୁଝିପାରି ସେ ଲଜ୍ଜିତ ହୁଏ ।

ବାଉଳିମା ପାନ ଖାଏ, ଅବଶ୍ୟ ତିରିଶ ଚାଳିଶ ଖଣ୍ଡ ନୁହେଁ । ଦୀନ ଦରିଦ୍ର ଯେପରି ଖାଆନ୍ତି ସେହିପରି । ଦେଢେ଼ ଖଣ୍ଡେ ପାଟିରେ ଗୁଞ୍ଜିଦେଲେ ପାଞ୍ଚସାତ ଘଣ୍ଟା ଚାଲିଯାଏ । ମେଞ୍ଚାଏ ଚୂନ, ତଦନୁପାତରେ ଖଇର ଗୁଣ୍ଡ, ତା ସାଙ୍ଗକୁ କିଛି ଗୁଆ, ପୁଣି ହାପୁଲେ ଗୁଣ୍ଡି—ଏ ହେଲା ବାଉଳିମାର ପାନଖିଆ । ବୁଚ୍ଚି ରାଧାପ୍ରିୟାଙ୍କ କଥା ମନେ କରି ଦିନେ ଦିନେ କହେ—'ବାଉଳିମା ମୋତେ ଖଣ୍ଡେ ପାନ ଦେ ତ ଆଜି ଖାଏଁ ।' ବାଉଳିମା ଆକାଶରୁ ଦୁଲ୍ କରି ଖସିପଡ଼ିଲା ଭଳି କହେ—'କହ୍ଲେ ମା, ଆଜି କଉଁଦିଗରୁ ସୂର୍ଯ୍ୟ ଦେବତା ଉଇଁଥିଲେ କି, ପାନ ଖାଇବାକୁ ମନ ହୋଇଗଲା ।' ବୁଚ୍ଚି ହସି ଉଠେ । ବରାଦ କରେ—ଟିକିଏ ଚୂନ, ଟିକିଏ ଖଇର, ଅଳ୍ପ କିଛି ଗୁଆ ଦେଇ ଖଣ୍ଡେ ପାନ ଭାଙ୍ଗିଆଣ । ବାଉଳିମା ତଦନୁସାରେ ଖଣ୍ଡିଏ ପାନ ଭାଙ୍ଗିଦିଏ, କିନ୍ତୁ ତାର ମନକୁ ପାଏନାହିଁ । ସେ କହେ—ଛିଃକିରେ ! ଏମିତି ପାନ ଖାଇବା ଯାହା, ପାଟିରେ ଛିରୁମୁଟିବା ତାହା ।

ସେଦିନ ବାଉଳିମା ବୁଚ୍ଚିର ବରାଦରେ ଯୋଡ଼ିଏ ଲମ୍ବେଇ ପାନ ଭାଙ୍ଗୁଛି । ବୁଚ୍ଚି ଟିକିଏ ଜୋରରେ ହସି କହୁଛି—'ଏଁ, ଇଏ କଣ କଲୁ ? ମୋତେ ମାରିଦେବୁ କି ? ଏତେ ଚୂନ ବୋଳି ପକାଉଛୁ କାହିଁକି ? ଖାଲି ଧାରେ ଦେ ।' ଏହିପରି ସମୟରେ ଭୁସ୍ ଭୁସ୍ ହୋଇ ଜଣେ ଘର ଭିତରକୁ ପଶି ଆସିଲା । ମୁହଁରେ ଲମ୍ବା ଦାଢ଼ି, ହାତରେ ଖଣ୍ଡେ ଛଡ଼ି । ହଠାତ୍ ବୁଚ୍ଚି ଉପରେ ଦୃଷ୍ଟି ପଡ଼ିବାରୁ କହିଲା—ବାଃ, ତୁ ବୁଚ୍ଚି ନାରେ ? ଏତେ ବଡ଼ ହୋଇଗଲେଣି !

ସୁଷି ଅବାକ୍ ହୋଇରହିଲା । ବାଉଳିମା ଭୁନ ଭୁନ କହିଲା—ଏଇଟା କାହା 'ଝିପିଯ ଲୋ ମା' ?

ଆଗନ୍ତୁକ ଅଗ୍ରସର ହୋଇଁ ହୋଇଁ ନିଜର ପରିଚୟ ଦେଲା । ଡେବର ହାତରେ ଦାଢ଼ିର ଅଗଟା ମୋଡ଼ୁଁ ମୋଡ଼ୁଁ କହିଲା—ଓହୋ ! ଚିହ୍ନି ପାରୁନାହୁଁ ପରା । ହଁ, ଚିହ୍ନିବୁ ବା କେମିତି ? କେଉଁ କାଳର କଥା ! ଗୋଟେ ଏ ଯୁଗ ବିତିଗଲାଣି ! ଆରେ, ମୁଁ ତୋର ଜଇ ଭାଇରେ ! ପିଲାଦିନେ ତୋତେ କେତେ କାନ୍ଧେଇ କାନ୍ଧେଇ ମଣିଷ କରିଛି । ସେକଥା କି ଆଉ ତୋର ମନେ ଥିବ ? ଅଗାଥିଲେ ଆଜି ଚିହ୍ନିପାରି ଚିହ୍ନିଥାନ୍ତେ । ହାୟ ହାୟ, ସେତ ଆଜି ସ୍ୱର୍ଗରେ ମୁଁ ଏଇ ସେ ଦିନ ଖବର ପାଇଲିରେ । ଝିଅଟା ପାଇ ମନଟା ବଡ଼ ଚାଣ୍ଟେକଟି ହେଲା । ଭାବିଲି—"ନା, ଥରେ ନଗଲେ ନୋହିବ । ପିଲାଟା ଆଜି ଅକୂଳରେ ଭାସୁଥିବ, ମାଈଟିଏ ଗୁଲଗଲା; ଆଉ କିଏ ଅଛି ? ଆଉ କଲିକତା ଗାଁରେ ବସି ବାବୁଆନ କରିବାକୁ ମନ ଡେକିଲା ନାହିଁ । ଦସିଲାଠାରୁ ଉଠି ଆସିଲି । ଆହା ହା ! ଆଗ ଠାକୁରାଣୀ ! ସେ କେତେ ମଜାର ମଣିଷ ଥିଲେ ! ମୋତେ କେତେ ଶରଧା କରୁଥିଲେ !"

ଏହା କହି ଆଗନ୍ତୁକ ହାୟ ହାୟ ହେବାକୁ ଲାଗିଲା । ସୁଷିର ଚଟ୍ପର ମନେ ପଡିଗଲା,—ଜୟକୃଷ୍ଣ ବୋଲି ମାଆଙ୍କର ଏକ ଦୂର ସମ୍ପର୍କୀୟ ପୁତ୍ରୁର ଥିଲା, ପିତାଙ୍କ ଆଜ୍ଞା ସେ ତାକୁ ଘରେ ଆଣି ରଖିଥିଲେ । ସେ ଦିନେ ଘରଛାଡ଼ି ପଳେଇଥିଲା । ମା ଥରେ ଅଧେ ତା କଥା କହୁଛନ୍ତି । କିନ୍ତୁ ଭ୍ରାତୃପୁତ୍ରର ଯେ ଯେଉଁ ଚିତ୍ର ଅଙ୍କନ କରିଯାଇଛନ୍ତି ତାହା ଉତ୍ସାହବ,—ଅନ୍ତତଃ ସୁନ୍ଦର ନୁହେଁ ।

ସୁଷମା କେତେକ ପରିମାଣରେ କୁଣ୍ଠିତ ଚିତ୍ତରେ ଆସି ତାଇ ଭାଇର ପାଦତଳେ ପ୍ରଣାମ କଲା । ଜୟକୃଷ୍ଣ ତାର ମୁଣ୍ଡଟି ସ୍ପର୍ଶକରି କହିଲା—ଉଠ୍ ଉଠ୍, ସୁଷି, ଉଠ୍ । ସୁଷି ଉଠି ଛିଡାହେଲାରୁ ସେ

ଛୁଆ ତିନି ପଚାରିଲା—ସେ ଲୋକଟି କିଏରେ ବୁଢ଼ୀ । ମୁକ୍ତି ଜବାବ୍ ଦେଲା ସେ ବାଉଳିମା । ମାଆଙ୍କ କାଳ ହୋଇଗଲା ଦିନରୁ ସେ ଆମ ଘରେ ଅଛି ।

ଜୟକୃଷ୍ଣ "ଓଃ ହୋ, ହୋ" ହୋଇ ହସିଉଠି କହିଲା—ବାଉଳିମା, ବାଉଳିମା ? ଆରେ ! ତାକୁ ଆଉ ମୁଁ ଚିହ୍ନେ ନାହିଁ ନା ? ବେଶ୍ ବେଶ୍, ଭଲ ଭଲ । ଘରକୁ ଗୋଟିଏ ଲୋକ ଥିବା ଦରକାର ।

ବାଉଳିମା ଆଁ ଠା କରି ଚାହିଁଥାଏ । ମନେ ମନେ କହୁଥାଏ —କେଉଁଦିନ ଏତେ ପରିଚୟ ହେଲା ଲୋ ମା ।

ସେ ଯାହା ହେଉ, ବର୍ତ୍ତମାନ ଦୁଇଟି ଲୋକସ୍ଥାନରେ ତିନୋଟି ଲୋକ ହେଲେ । ଠିକ୍ କହିବାକୁ ଗଲେ ଏହି ଗର୍ବଲେଶହୀନ ପଲ୍ଲୀ ମନ୍ଦିରଟିରେ ଦୁଇଟି ଦେବତା ଥିଲେ, ବର୍ତ୍ତମାନ ସେମାନଙ୍କ ସାଙ୍ଗକୁ ଏକ ଦାନବର ଆବିର୍ଭାବ ହେଲା । ଜୟକୃଷ୍ଣ ଏତେ କାଳ ହେଲା କଲିକତାରେ ରହି ଯେ କଦର୍ଯ୍ୟ ଉପାୟରେ ଜୀବନ ଯାପନ କରୁଥିଲା, ତାହା ବର୍ଣ୍ଣନା କରି ଏ କାହାଣୀ କଳଙ୍କିତ କରିବା ଲେଖକର ଅଭିପ୍ରେତ ନୁହେଁ । କିନ୍ତୁ ସାମାନ୍ୟ କିଛିଏ ସୂଚନା ନ ଦେଲେ ନ ଚଳେ । ଯେଉଁ ଦୁଶ୍ଚରିତ୍ରା ସ୍ତ୍ରୀଲୋକଟାକୁ ନେଇ ଜୟକୃଷ୍ଣ ସେଦିନ ଅନ୍ତର୍ଦ୍ଧାନ ହୋଇଯାଇଥିଲା ସେ କଲିକତାରେ ରହି କାଳକ୍ରମେ ବେଶ୍ୟାବୃତ୍ତି ଆରମ୍ଭ କରିଦେଇଥିଲା ଏବଂ ଜୟକୃଷ୍ଣ ତାର ସେହି କଦର୍ଯ୍ୟ ଜୀବିକାଯାପନରେ ସହାୟତା କରି ନିଜର କଳୁଷିତ କଳଙ୍କମୟ ଜୀବନ ଯାପନ କରୁଥିଲା । ଅନେକଦିନ ଏହିପରି କଟିଥିଲା । କିନ୍ତୁ ଏ ଜୀବନଯାତ୍ରାର ଅପରିହାର୍ଯ୍ୟ ପରିଣାମ ଯାହା, ତାହାହିଁ ଅବଶେଷରେ ଘଟିଲା । ନାନାକାରଣରୁ, ନାନାଘଟଣାରୁ ଏହି ଦୁଶ୍ଚରିତ୍ର ଯୁବକ ଯୁବତୀ ଦୁହିଁଙ୍କ ମଧ୍ୟରେ ଭୀଷଣ କଳହର

ସୁବିଧାତ ହେଲା । ତାହା ଦିନକୁ ଦିନ ପରିପୁଷ୍ଟ ଓ ପରିବର୍ଦ୍ଧିତ ହୋଇ ଅବଶେଷରେ ଗୋଟାଏ "ଖୁନ୍-ଖରାପି" ବା ହତ୍ୟାକାଣ୍ଡର ଅଭିନୟ ହେବାକୁ ଯାଉଥିଲା । କିନ୍ତୁ ଭାଗ୍ୟକ୍ରମେ ଜୟକୃଷ୍ଣ ଜୀବନନେଇ ପଳାଇ ଆସିବାକୁ ସମର୍ଥ ହୋଇଥିଲା ଏବଂ ତାହାର ପାପପ୍ରେୟସୀ କଲିକତାର ଜଣେ ଧନଶାଳୀ ବଙ୍ଗୀୟ ବାବୁଙ୍କର "ବାଗାନବାଡ଼ି"ରେ ପ୍ରତିଷ୍ଠିତା ହୋଇ ଉଦ୍ୟାନ ବିହାରର ସୌଭାଗ୍ୟସୁଖ ବର୍ଦ୍ଧନ କରିଥିଲା । ଜୟକୃଷ୍ଣର ମୁଖରୁ ମନେ ପଡ଼ିଗଲା ପୂର୍ବତନ ଆଶ୍ରୟ ସ୍ଥଳୀର କଥା ଏବଂ ଅଜ୍ଞାତବଳରେ ସେ ଏହି ଜନ୍ମଭୂମି ଅଭିମୁଖେ ଦୌଡ଼ିଆସିବା ଆରମ୍ଭ କରିଦେଲା ।

ଜୟକୃଷ୍ଣ ସଙ୍ଗରେ ଆଣିଥିଲା ତାର ବହୁଦିନର ପରିପୋଷିତ ଅହିଫେନପ୍ରୀତି । ପ୍ରତିଦିନ ସେହି ପ୍ରୀତିପଥର ପାଥେୟ ସ୍ୱରୂପ ତାର ଗୁଡ଼ିଏ ପଇସା ଲୋଡ଼ା । ସେତକ ନ ହେଲେ ତାକୁ ତ୍ରିଭୁବନ ଅନ୍ଧାର ଦିଶେ, ଦଶଦିଗ ଘୂର୍ଣ୍ଣିତ ହୁଏ, ଜୀବନର ସମସ୍ତ ସରସତା ମୁହୂର୍ତ୍ତିକେ ଲୋପ ପାଇଯାଏ । ହାଇ ଆସେ, ଆଖି ବୁଜିଯାଏ, ନିଶ୍ୱାସ ତାତିଉଠେ, ପୃଥ୍ୱୀ ପ୍ରଳୟ ହୁଏ । ଦିନେ ଓଳିଏ ତାର ଭାତ ନ ଖାଇଲେ ଚଳିଯାଇପାରେ, କିନ୍ତୁ ଅଫିମ ନ ହେଲେ ସେ ଅଚଳ । ସେତକ ତାର ପ୍ରାଣ, ସୁତରାଂ ସେତକରୁ ବଞ୍ଚିତ ହେଲେ ସେ ମହା-ବିଭ୍ରାଟ ସୃଷ୍ଟିକରେ, ଅକଥ୍ୟ ଉପଦ୍ରବ ଆରମ୍ଭ କରେ, ସ୍ୱର୍ଗକୁ ନରକରେ ପରିଣତ କରିବାକୁ କୁଣ୍ଠାବୋଧ କରେ ନାହିଁ । ସେତକ ନିର୍ବିବାଦରେ ଲାଭକରି ପାରିଲେ ସେ ସଂସାରରେ ନିଜକୁ ପରମସୁଖୀ ମନେକରେ ଏବଂ ଯେ ବ୍ୟକ୍ତି ସେତକ ତାର ହସ୍ତଗତ କରିଦେଇ ପାରେ ସେ ତାର ମସ୍ତକର ମଣି, ହୃଦୟର ହାର, ପ୍ରାଣର ଉପାସ୍ୟ ଦେବତା; ନଚେତ୍ ସେ ତାର ଶତ୍ରୁ, ତାର ଦୁସ୍‌ମନ୍, ତାର କଣ୍ଟକ ।

କେଉଁ କୁଚକ୍ରୀ ବନ୍ଧୁ ତାର କୁଚକ୍ରଫଳରେ ଏହି ଦୁଷ୍ଟଦାନବ କଲିକତାର ହାଡ଼କଟା ଗଳିରୁ ଫେରି ଆସିଲା, ତା ସେହି ବ୍ୟାଟା ପୁରୁଷଙ୍କ ଜାଣେ। କିନ୍ତୁ ତାର ଆବିର୍ଭାବ ଫଳରେ ସୁରର ଜୀବନରେ ନୂତନ ଦୁଃଖ ଦୁର୍ଯୋଗର ବହ୍ନି ଜଳିଉଠିଲା।

---

## ବିଂଶ ପରିଚ୍ଛେଦ

"ଏତେବେଳ ଯାଏଁ କଣ ଚା ଟିକିଏ ହୋଇପାରିଲା ନାହିଁରେ। ଉଃ, ଏଇ କେତେଟା ଦିନ ଭିତରେ କି ଅଳସେଇ ଯେ ପାଲଟି ଯାଇଛୁ ତୁ, ତା ଦେଖି ମୁଁ ଅବାକ୍ ହେଉଛି!"

ଏହା କହି ଜୟକୃଷ୍ଣ ଗୃହାଭ୍ୟନ୍ତରକୁ ପ୍ରବେଶ କଲା। ପ୍ରାତଃକୃତ୍ୟ ସାରି ଗରମ ଚା ଟିକିଏ ତାର ନ ହେଲେ ନ ହୁଏ। ପ୍ରତିଦିନ ଏଇ ଝଞ୍ଜାଳ। ସେ ଆସିଲା ଦିନରୁ ଏ ଗୋଟାଏ ନୂତନ ଧନ୍ଦା ଆରମ୍ଭ ହୋଇଛି। ସୁଷମାର ଗୋଟାଏ ଅଧିକା କାମ ବଢ଼ିଛି। ପ୍ରାତଃକାଳରୁ ଉଠି ପ୍ରତିଦିନ ତାଙ୍କୁ ଚା କରିବାକୁ ହୁଏ। ତା ନ ହେଲେ ଜାଇଭାଇର ମିଜାଜ ଚାଠାରୁ ଅଧିକ ଗରମ ହୋଇଯାଏ, ସେ ଦକାଦକି କରେ, ଅକାରଣଟାରେ ଅଶାନ୍ତି ସୃଷ୍ଟିକରେ। ଆଜି ଯେ ବେଶୀଗୁଡ଼ାଏ ବେଳ ହୋଇଯାଇଛି, ତା ନୁହେଁ। ଏଇ ଘଣ୍ଟାଏ ହେବ ରାତି ପାହିଲା। ସୂର୍ଯ୍ୟଦେବତା ଉପରକୁ ଉଠି ନାହାନ୍ତି। ଅନ୍ୟଲୋକଙ୍କ ଘରେ ଏଯାଏଁ କବାଟ ଫିଟି ନାହିଁ। ତଥାପି ଜାଇର ଚା ପାନର ସମୟ ଗଡ଼ିଗଲା ବୋଲି ସେ ଅସ୍ଥିର ହୋଇଉଠିଲା।

ସୁଷମା ଚୁଲ୍ଲୀ ଭିତରକୁ ଜାଳଟା ଠେଲି ଦେଉଁ ଦେଉଁ ଜବାବ ଦେଲା—ହଉଛି, ଟିକିଏ ଧୈର୍ଯ୍ୟ ଧରି ଜାଇଭାଇ। ପାଣିଟା ଅଗ୍ନାଙ୍କର ଫୁଟିଲେ ତ ହେବ?

"ଅଠରେ ତୋ ପାଣି ଛୁନ୍ଦୁ ଛୁନ୍ଦୁ ଏଆଡେ଼ ମଣିଷର ଘର ପଡ଼େ ପଡ଼ିଯାଉ । ଏ ସନ୍ଧ୍ୟାବେଳେ ତୋର ପାଣି ଛୁନ୍ଦୁଛି !"—ଏହା କହି ଜୟକୃଷ୍ଣ ମୁହଁ ଛୁଆଁଡ଼ିବାକୁ ଲାଗିଲା ।

ବାଉଳମା ଅନ୍ଧାରୁଆ ମୁହଁଟିରେ ଅଗଣାଟା ଝାଡୁଥିଲା । ଜୟକୃଷ୍ଣର ଉତ୍ପାତ ଦେଖି ସମ୍ଭାଳି ପାରିଲା ନାହିଁ,—କହି ପକାଇଲା—କି ମିଞ୍ଜିଏଟା ମ ! ସନ୍ଧ୍ୟାସଞ୍ଜିଳିହେବା ଯାଉକରେ ନାହିଁ । ଘଡ଼ି ପାହୁଛି କି ନାହିଁ,—ସାନ୍ଧ୍ୟାନ୍ତ୍ରିଆ କୁଆ ଗୁହ ଖାଇଛି କି ନାହିଁ,—କଣ ନା, ଦିଅ ମୋତେ ଗୃ । ମୋ ହଂସା ଉଡ଼ିଗଲା । ଏ କି ଅଲକ୍ଷଣ ଢଙ୍ଗ ଲୋ ମା !

ଏହା କହି ସେ କଙ୍କାଳରେ ହାତଦେଇ ଚଉ୍ ଚଉ୍ କରି ଫମ୍ପିରିବାକୁ ଲାଗିଲା । ଜୟକୃଷ୍ଣ କାନରେ କଥାଗୁଡ଼ାକ ଯାଇ ଠକ୍ ଠକ୍ ବାଜିଲା । ମିଞ୍ଜାସ ଆହୁରି କଡ଼ା ହୋଇଉଠିଲା । ସେ ଚାହୁଁକାର ଛାଡ଼ିଲା—କଲିକତା ଭାଷାରେ ଶୋଧନ ଝାଡ଼ିଲା—"ଦ୍ୟାଖ୍ ଦ୍ୟାଖ୍ ଘୁଷ୍ଟି, ଏଇ ଦଜାଲ୍ ମାଗୀଟାକେ ଦ୍ୟାଖ୍ ତ ! ଯତ ବଡ଼ ମୁନ୍ ନୟ୍, ତତ ବଡ଼ କଥା ! ତୁଇ ଏ ବାଡ଼ତେ କେ'ଲୁ ?"

ବାଉଳମା ଏଥର କଙ୍କାଳ ସିଧାକରି ଛିଡ଼ାହେଲା । ସମ୍ମାର୍ଜନୀଟା ପଚାଷ୍ଟାର ଭଦରେ ଅଗକୁ ଦର୍ଶେଇ ଦେଇ କହିଲା—ହଇରେ "ଟେକ'ଲା !" ମୁହଁ ସମ୍ଭାଳି କଥାକହ । ନୋହିଲେ ତୋ ବଙ୍ଗାଳପଣିଆ ଛଡ଼ାଇଦେବି । ଜାଣୁନା ? ଏ ଅଉ କେହି ନୁହେଁ ଯେ—ବାଉଳମା । ଭଲପାଖରେ ସେ ଯେତକି ଭଲ, ମନ୍ଦ ପାଖରେ ସେତକି ମନ୍ଦ । ମୋ ଅଗଣେ ବଙ୍ଗଳା ଝାଡୁଛୁ ! କେତେ ବଙ୍ଗାଳୀଙ୍କୁ କାନରେ ଦାଣ୍ଡ ଫୋପାଡ଼ି ଦେବି । ଆଚ୍ଛା ରେ ଗୃ-ଖିଆ ବଙ୍ଗାଳି ! ପଗୁଚରେଁ, କଲିକତା ଗାଁରୁ କି ମାଲ୍‌ମତାଟା ନେଇ ଆସିଥିଲୁ କହ ନା, ଏତେ ଜୁଲମ୍ ?

ଜୟକୃଷ୍ଣ ଏହା ଶୁଣି ଆହୁରି ରଗି ଉଠିଲା । ମାଡ଼ିବାପାଇଁ ହୁମ୍ ହୁମ୍ ହୋଇ ପାଖକୁ ଭିଡ଼ିଗଲା । ବାଉଳମା ବି ଛାଡ଼ିବା ପାତ୍ରୀ

ନୁହେଁ । ତୁରନ୍ତ ଲମ୍ବା ଦାଢ଼ିରେ ହାତପକାଇ ଦେଲା । କହିଲା— କଣ ରେ ଅଲଗାଇଧିଆ ହାଡ଼ଭୁଖିଆ ମେଘେନ୍ତର ! ମାରିବୁ, ମାରିବୁ ? ଲଗାନି ହାତ, ଦେଖେଁ !

ଏହା କହି ପିଠି ସହିତ ସମ୍ମାର୍ଜନୀର ଘନିଷ୍ଠ ସମ୍ପର୍କ ପ୍ରତିଷ୍ଠା କରି ଦେବାକୁ ଉଦ୍ୟତ ହେଉଥିଲା; ଏହି ସମୟରେ ସୁଷ୍ମି ଧାଇଁଆସି ଦୁହିଁଙ୍କୁ ଛଡ଼ାଛଡ଼ି କରିଦେଲା । କହିଲା ଛି ଛି, ଏ ଗୋଟାଏ କି ଅମର୍ଯ୍ୟାଦାର କଥା ମ ! ଲୋକେ ଶୁଣିଲେ କଣ କହିବେ ? ମୋର ଟିକିଏ ଉଠିବାକୁ ଡେରି ହୋଇଗଲା । ନ ହେଲେ କି ଏତେବେଳଯାଏଁ ଗୃ ଟା ଭଅଁର ଘର ନ ଥାନ୍ତା । ଯା ଯା ବାଉଳୀମା, ତୋ କାମରେ ଯା । ଅସ୍ତ, ଜଇଭାଇ ଗୃ ଥଣ୍ଡା ହୋଇଯିବ ।

ଏହା କହି ସେ ବାଉଳୀମାକୁ ଠେଲି ଅନ୍ୟଆଡ଼କୁ ବାହାର କରିଦେଲା । ବାଉଳୀମା ଗର୍ ଗର୍ ହୋଇ କହିବାକୁ ଲାଗିଲା— 'ତମର ସେଇ ସର୍ବସହଣୀପଣ ଗଲା ନାହିଁ ସଖୀ, ସେଥିପାଇଁତ ଏତେ ଦୁଃଖ ।' ସୁଷ୍ମି ତାକୁ ତୁନି 'ତୁନି ବୋଧ ଦେଇ କହିଲା—ହଉ ଲୋ ବାଉଳୀମା କଣ କରିବା, ମୋ ମୁହଁକୁ ଅନେଇଁ ସବୁ ସହି ଯା ।

ବାସ୍ତବିକ ବାଉଳୀମା ସୁଷ୍ମିର ମୁହଁକୁ ଅନେଇଁ ସବୁ ସହିପାରେ । ସେ ଆଉ ଉଚ୍ଚବାଚ୍ୟ ନ କରି ନିଜ ଧନ୍ଦାରେ ଲାଗିଗଲା । ଇତ୍ୟବସରରେ ଜୟକୃଷ୍ଣ ଯାଇ ଗୋଟାଏ ଘରର ନିର୍ଜନ କୋଣରେ ଠିଆହୋଇ ଦାଢ଼ିଟା ଅଉଁସୁ ଅଉଁସୁ ମନେ ମନେ କହିଲା—'ଉଃ, ଚଣ୍ଡାଳୁଣୀଟା କି ଝିଙ୍କାଟା ଦେଲା, ହୁ ହୁ ହୋଇ ଜଳୁଛି !' ବାସ୍ତବରେ ବାଉଳୀମା ଅଳ୍ପାକରି ଝିଙ୍କାଟାଏ ଦେଇଥିଲା । ସେହିପରି ଆଉ ଥରେ ଝିଙ୍କି ଦେଇଥିଲେ ଜୟକୃଷ୍ଣର ଦାଢ଼ି ନିବାଡ଼ ହୋଇଯାଇଥାନ୍ତା । ଯାହାହେଉ ଜୟକୃଷ୍ଣର ଚେତନା ହେଲା । ସେ ବୁଝି ପାରିଲା— ବାଉଳୀମାଟା ସହଜ ଜନ୍ତୁ ନୁହେଁ । ତା କଥାଉପରେ କଥା କହିବା

ବୁଦ୍ଧିଅଟକାଙ୍କର କାମ ନୁହେଁ । ଏହିସମୟରେ ସୁଷି ଆସି ଡାକିଲା—ଆସ ଜଇଭାଇ, ତମେ ଏଇଠି ଅଛ, ମୁଁ କେତେ ଖୋଜିଲିଣି । ଗୁ-ଟା ପରା ଥଣ୍ଡା ହୋଇଯାଉଛି !

ଜଇ ଛଳନାପୂର୍ଣ୍ଣ ଅଭିମାନ କରି କହିଲା—ନା, ସୁଷି, ଆଉ କଣ ଖାଇବି, ଥାଉ । ଗୁ ଖାଇବାର ବଡ଼ ବାପ ହୋଇଯାଉଛି ।

ସୁଷି ଅନୁନୟକରି କହିଲା—ଛି, ଜଇଭାଇ, ଏମିତି ଅବୁଝା ହେଲେ କି ଚଳେ ? ମୋ ଉପରେ ରାଗିବାଟା କଣ ଉଚିତ ? ଆସ, ଖାଇବ ଆସ ।

ଏହା କହି ସେ ଜୟକୃଷ୍ଣଙ୍କର ହାତଧରି ଟାଣି ନେଇଗଲା । ଜୟକୃଷ୍ଣର ମନଟା ମଧ୍ୟ ଥିଲା, ସୁତରାଂ ସେ ସିଧା ଚାଲିବାକୁ ଲାଗିଲା ।

ଗରମ ଗୁ ଉଦରସ୍ଥ କରି ଜୟକୃଷ୍ଣ ବୁଲିବାକୁ ବାହାରିଗଲା । ସେହିଦିନ ଜୟକୃଷ୍ଣର ଅଫିମ ଅଣ୍ଟିବା ପାଳି । ସୁଷି ଚାରିଦିନକୁ ଟଙ୍କାଟିଏ ଦିଏ ଏବଂ ସେହି ଟଙ୍କାରେ ଅଫିମ କିଣାହୋଇ ଆସେ । ଆଜି ଅଫିମଟିକ ଦେବାକୁ ଯାଇ ସୁଷି ଦେଖିଲା—ପାଣ୍ଠି ପ୍ରାୟ ଶେଷ ଉପରେ । ଆଉ କେତେଟାଦିନ ଗଲେ ସବୁ ଝାଡ଼ଝୁଡ଼ ହୋଇଯିବ । ପୋଡାଏ କାଣିକଉଡ଼ି ବି ରହିବ ନାହିଁ । ତେବେ ଉପାୟ କଣ ? ତାର ଚିନ୍ତା ବଢ଼ିଗଲା । ଏତେଦିନେ ତା ମନରେ ଦୁଶ୍ଚିନ୍ତା ପ୍ରବେଶକଲା । ଚତୁର୍ଦ୍ଦିଗ ତାକୁ ଶୂନ୍ୟ ଦେଖାଗଲା । ଭବିଷ୍ୟତଟା ଘୋର ବିଭୀଷିକାମୟ ହୋଇଉଠିଲା । ଅଫିମପାଇଁ ଟଙ୍କାଟିଏ ଜୟକୃଷ୍ଣର ହାତକୁ ବଢ଼ାଇ ଦେଇ, ସେ ଆସି ପିଣ୍ଡାଟିରେ କାନ୍ଥକୁ ଆଉଜି ବସିପଡ଼ିଲା । ପଦ୍ମଫୁଲପରି ସୁନ୍ଦର ମୁହଁଟି କରତଳରେ ନ୍ୟସ୍ତକରି ସେ ଭାଳିବାକୁ ଲାଗିଲା—ଅଦୂର ଭବିଷ୍ୟତର କଥା । ବାଉଳିମା ପୋଖରୀ ଘାଟକୁ ଯାଇଥିଲା । ଫେରିଆସି ସୁଷମାର ସେହି ଚିନ୍ତାକୁଳ ଅବସ୍ଥା ଲକ୍ଷ୍ୟକଲା । ସୁଷିର ସୁପ୍ରସନ୍ନ ମୁଖମଣ୍ଡଳଟି ଯେପରି କଳା ବାଦଲରେ

ଅଚ୍ଛନ୍ନ ହୋଇ ରହିଥିଲା । ବାଉଳମା ପାଖକୁ ଆସି ଡାକିଲା—ସୁଷି !

ସୁଷମାର ଧ୍ୟାନ ଭାଙ୍ଗିଗଲା । ସେ ବିଷାଦଭାରାକ୍ରାନ୍ତ ମୁଖମଣ୍ଡଳରେ ପ୍ରସନ୍ନତାର ଦୀପ୍ତି ଫୁଟାଇବାକୁ ଚେଷ୍ଟାକଲା, ମାତ୍ର ଧରା ପଡ଼ିଗଲା । ବାଉଳମା କହିଲା—ସୁଷି ! ଏ କଣ ?

ସୁଷି ଉତ୍ତରଦେଲା—ନା, କିଛି ନା ।

ବାଉଳମା ଧରିବସିଲା—'ନା' ବୋଲି କହିଲେ କି ହୁଏ ମା ? ମୁହଁଖଣ୍ଡି ଯେ ଏକାବେଳକେ କଳାକାଠ ପଡ଼ି ଯାଉଛି । କଣ ହେଲା ସୁଷି !

ବାଉଳମା ଜିଦ୍ଧି କରିବାକୁ ଲାଗିଲା । ଠିକ୍ ଗର୍ଭଧାରିଣୀଟି ପରି କୋଳକୁ ଟାଣିନେଇ କହିଲା ମା ମୋର, ସୁନାର ଧାରଟି ମୋର ! କି ଦୁଃଖ ରେ ତୋର ?

ସୁଷି କୋଳରେ ମୁହଁଟି ଗୁଞ୍ଜି କହିଲା—ବାଉଳମା, ଗୋପାଳ ବାବୁଙ୍କର ଛୋଟ ଛୋଟ ଝିଅ ଦୁଇଟିଙ୍କୁ ପଢ଼ାଇବାପାଇଁ ଗୋଟିଏ ମାଷ୍ଟ୍ରାଣି ଦରକାର ବୋଲି ଶୁଣିଥିଲି । ତାଙ୍କ ଘରକୁ ଟିକିଏ ଯାଇ ବୁଝିଆସି ପାରିବୁ ?

ବାଉଳାମା ଏଥର ସୁଷିର ମନ ଦୁଃଖର କାରଣ ଢେର୍ ଅନୁମାନ କରିନେଲା । ଭାବିଲା—ଯେଉଁ କେତୋଟା ଟଙ୍କା ! ଅନ୍ କେତେଦିନ ସେଥିରେ ଚଳନ୍ତା ? ବସି ଖାଇଲେ ନଈବାଲି ସରେ । ତା ଉପରେ ପୁଣି ସେହି ଅକର୍ମାଟା ଆସି କେଉଁଠୁ ଜୁଟିଲା । ବାପର ମାଲ ଥୁଆହୋଇଥିଲା ପରି ବସି ବସି ତଲୁ କରୁଛି । ସେଥିରେ ପୁଣି କେତେ ଜୁଲମ୍ ! ଚୁ ଦିଅ, ଅମ୍ଳେଟ ଦିଅ, ଯ୍ବା ଦିଅ, ତା ଦିଅ, ନ ହେଲେ ଝଗା । ସତେ ଯେପରି ଚଉଦପୁରୁଷର ଗୁରୁ ଗୋସେଇଁ । ପୁଣି ଅଚଳ ତ ଅଇଲା ଏବେ ଯା । ନା ତା ବି ନୁହେଁ । ଚୋଡ଼ ଜନ୍ମାହିଁ ।

ବାଉଳିମା ଏମିତା ଭାବି ଭାବି ଗଲେ । ମନେ ମନେ କହିଲେ—ସ୍ୱର୍ଗ ଯଦି ଥରେ ଇସ୍ତଫା ଦେଇ ଦିଅନ୍ତା, ଲୁଚି ଯୋଗିନୀଖିଆଙ୍କୁ ପହଁରା ମୁଣ୍ଡରେ ଦଂଘାତାର ଦେଇ ଆଜ ବିଦା କରିଦିଅନ୍ତା । ସେଇଠି ନ ଥିଲେ, ଦଂଠା ପେଟ ପୋଷିବା ବାଉଳୀମା ପଥରେ ବଳିପଡ଼ନ୍ତା ନାହିଁ ।

ଏହାପରେ ମନେ ମନେ ଭାବି ସେ ମୁକ୍ତମାକୁ କହିଲେ—ଶୁଣି ! କେଉଁ ଗୋପାଳବାବୁ ? ସେଇ ଆର ଗାଁର ଜମିଦାରବାବୁ ? ଯା ନାଁ ଧରିଲେ ଭାତ ମିଳେ ନାହିଁ ? ରାମ୍, ରାମ୍, ଲୋକେ ପୁଣି ତା ମୁହଁ ଚାହାଁନ୍ତି ! ଆଉ ତାର ମାଷ୍ଟରାଣୀ ଦରକାର ଥିଲେ ବି କଣ ହେଲା ?

ମୁକ୍ତି ଜବାବ୍ ଦେଲା—ଯଦି ଦୟାଙ୍କର ପିଲା ଦିଓଟି ପଢ଼େଇବାର ଭାର ମୋ ଉପରେ—

ବାଉଳିମା ବାଧାଦେଇ କହିଲେ—ଥାଉ, ଥାଉ । ଆଉ କହିବାର ଦରକାର ନାହିଁ । ତାଙ୍କ ଘରର ଯେଉଁ ଦୟା ମାୟା ତ ! ମରିଯାଉଥିଲେ ଲୋକର ତୁଣ୍ଡରେ ପାଣି ଟୋପାଏ ଦେବେ ନାହିଁ । ତାଙ୍କ ଘର କଥା ମୁଁ ଜାଣେନାହିଁ ନା ? ପଇସା ଥାଇ କଣ ହେବ ? କାହିଁ ଲାଗିଯାଉ ସେ ପଇସାରେ । ତା ଖାଇବାକୁ ବି ଯୋଗ୍ୟ ନୁହେଁ । ସେଠିକି ଯାଇ ପଢ଼େଇବ ବୋଲି ବିଗୁଡ଼ିଛ ପରା ଶୁଣି ! ଛି କର ! ମରିଛି ତାଙ୍କ ଦୁଆର ମାଡ଼ନ୍ତି ? ମୁକ୍ତି ତାଙ୍କ ଘର ଯାଇ କଉଁଠି,—ଏ ଗାଁ ଛାଡ଼ିଲେ ଯାଇ ସେ ଗାଁ । ଏତେ ବାଟ ପାଠ ପଢ଼େଇବାକୁ ଯିବ ? କି ? ପେଟକୁ ଚାରି ଗଣ୍ଡା ଦେଲେ କଣ ହେଲା କି ? ଦେଖାଯାଉ କେଉଁଠୁ ପାଣି କେଉଁଠିକି ଯାଉଛି । ଏତେ 'ଦେମାକ' କାହିଁକି ? ଯୋଗିନୀଖିଆଟା ଆଜ ଗଲେ, କାଲ ମରିବ କଥା ଟା ବଦଳିବ ନାହିଁ । ତମେ ଏମିତି କାହିଁ ହେଉଛ ? କମଳରେ ଢୋର ହେଲେ ବାଉଳିମା ଏ ସବୁ କଥାକୁ ଚିନ୍ତା କରେ ନାହିଁ ଶୁଣି ! ଗଲ,

ଗୁଳ, ଲଙ୍ଗୋଟା ପାଲଟି ଦିଅ, ମୁଁ ପଖାଳ ପକାଏଁ । ଏଇକ୍ଷଣି ଘଣ୍ଟ ମାଡ଼ିଆସିବ ।

ଯୁଥି ଧୀରେ ଧୀରେ ଉଠି ଠିଆ ହେଲା । କହିଲା—ନା, ବାଉଳମା, ମୁଁ ଯୋଗୀଙ୍କ ତୋଠକୁ ଯାଇ ପେଟରା ପାଣିରେ ବୁଡ଼ାଇଦେଇ ଆସେ ।

ଏହିପରି ଭାବରେ ଆଉ କିଛିଦିନ କଟିଗଲା । ଦିନେ ବାଉଳମା ଯୁଥିକୁ ବୁଝେଇ କହିଲା—ଦେଖ ଝିଅ! ଆମର ଛ ଠ—ଠା ଠିକ୍ । ଆଉ କେତେ କାଳ ସେ ମଣିପଟାକୁ ଯେପରି ଦବେଇ ଯୋଡ଼ିଥିବ ? ତାକୁ ଏବେ ସଫା କହିଦେଲେ ହିଁ ଅଗ୍ରା ନାହିଁ ଯେ—ବାବା, ଏବେ ତୋର ସମ୍ଭା ତୁ ଦେଖ୍ । ଏତେକାଳ ଚଳେଇ ଆସିଲି, ଆଉ ପାରିବୁ ନାହିଁ ।

ଯୁଥିମା ଉତ୍ତର ଦେଲା—ଛି ଛି, ଏମିତ ଗୋଟାଏ କଥା କ କୁହାଯାଏ ବାଉଳମା ?

ବାଉଳମା କହିଲା—ହିଁ ନୁର୍ କୁହାଯାଏ । ତମେ ନ କୁହ, ମୁଁ କହିବି । ନ କହି ତ ଆଉ ଉପାୟ ନାହିଁ ମା ।

ଏହା କହି ସେ ଅନୁମତି ପ୍ରତୀକ୍ଷାରେ ଯୁଥିର ମୁହଁକୁ ଚାହିଁ ରହିଲା । ଯୁଥି ଅନେକ ଭାବି ଭାବି କହିଲା—ନା ବାଉଳମା, ଜାଇଭାଇ ମନରେ କଷ୍ଟ ହେବ ।

ବାଉଳମା ଚିଡ଼ିଉଠି କହିଲା—ଦୂର କର । ଯା ମନରେ କଷ୍ଟ ହେବ, ସେ ଅନ୍ୟର କଷ୍ଟ ନ ବୁଝେ କାହିଁକି ? ଯେତେବେଳେ ଖାଣ୍ଟି ଉପାସଟି ରହିବାକୁ ହେବ ସେତେବେଳେ ? ଅଦଣ୍ଡା ବୁଝି ତ ପୁଣି ଛାମ କରିବାକୁ ହୁଏ ?

ଏହା କହି ସେ ପୁନର୍ବାର ଯୁଥିର ଅନୁମତିକୁ ଚାହିଁ ରହିଲା । ଯୁଥି ନିଃଶ୍ୱାସ ପକାଇ କହିଲା—ଯାହା ଭଲ ବୁଝୁଛୁ କର, ବାଉଳମା । ତେବେ ନିତାନ୍ତ କଥାକଥା ଯେପରି—

ବାଉଳମା ଉଦ୍ଦେଶ୍ୟଟା ବୁଝିପାରି ତୁରନ୍ତ କହି ଉଠିଲେ—ନା ମା, କଣ୍ଠ କଥା କାହାକୁ କହିବାକୁ ଥିବ ? ଏଥିରେ ସଙ୍କୋଚର ଦରକାର କଣ ?

ସେହିଦିନ ସେ ଅନ୍ୟ ସମୟରେ ଜୟକୃଷ୍ଣଙ୍କୁ ଡାକି କହିଲେ—ଆହେ ଜାଇଁଭାଇ, ଗୋଟାଏ କଥା କହିବି, ମନରେ କିଛି ଭାବିବ ନାହିଁ ତ ?

ଜୟକୃଷ୍ଣ ସନ୍ଦେହ ମନରେ ପଚାରିଲେ—କଣ ଏମିତି ଭାବନାର କଥାଟା ବାଉଳମା ?

ବାଉଳମା ଜବାବ ଦେଲେ—ହଁ ଭାଇ, ଭାବନାର କଥା ନୁହେଁ ତ ଆଉ କଣ ? ତମେ କି ତ ଦେଖିପାରୁନଥିବ ! ଏ କେତେ ଦିନ ହେଲା ଯେଉଁ ହଇରାଣ ହେବାକୁ ପଡୁଛି ତା ଯେ ଦିନରାତି କରୁଛନ୍ତି ସେ ଜାଣେ । ପିଲାଟା ବଡ଼ ଗ୍ଲାନିଆ ହୋଇଗଲାଣି, ବସି ବସି ଖାଲି କାନ୍ଦୁଛି । ହାତରେ ପଇସା ବୋଲି ଯା ଥିଲା, ସବୁ ଶେଷ । ଏମିତି ଆକାଶକୁ ଅନାଇ ରହିବା ଛଡ଼ା ଆଉ ଗତି କଣ ଅଛି ? କଥାଟା, ଭାଇ, ତମରି ଭଲପାଇଁ କହୁଛି । ଆମେ ଯାହା ମାଇପିଲୋକ ଉପାସ ରହିକି ପଡ଼ିରହି କପାଳକୁ ଆଦରି କାଳ କାଟିବୁଁ । ତୁମେ ମର୍ଦ୍ଦପୁଅ, ହାତହଲେଇ ରୋଜଗାର କରିବା ଲୋକ । ତୁମେ କାହିଁକି ଆମପାଇଁରେ ପଡ଼ି ଘାଣ୍ଟିହେବ କହିଲ ।

ଜୟକୃଷ୍ଣ ବୁଝିପାରିଲେ ଯେ, ତାଙ୍କୁହିଁ ଘରୁ ବାହାର କରିବା ପାଇଁ ଏତେ ଫିକର । ମନେ ମନେ ବଙ୍ଗଳାରେ କହିଲେ—'ମାଗୀ କମ୍ ନୟ ତ !' ପ୍ରକାଶ୍ୟରେ ଉତ୍ତର ଦେଲେ—କାହିଁ ବାଉଳମା, କଣ ହେଲା ଯେ ଏତେ ବ୍ୟସ୍ତ ହୋଇପଡ଼ୁଛ ?

ବାଉଳମା କହିଲେ—ମିଛଟାରେ କି ଆଉ ବ୍ୟସ୍ତ ହେଉଛି ଭାଇ ! ଦିନ ଦୁଇ ଚାରିଟା ପରେ ଯେ କଣ କରିବାକୁ ହେବ, ତା

ଭବ ଗୁରଦଗ ଅନ୍ଧାର ଦେଖାଯାଉଛି । ଏଇ କଥା ଭାବି ଭାବି ବଂଶୀର ଅଧେ ଦେହ ଝଡ଼ିଗଲାଣି । ସେ ଦିନ ପରି କାହିଁ କାହିଁ କାନ୍ଦ ପକେଇଲା—ନାଁ, ବାଉଳମା, ଗଳାରେ ଦଉଡ଼ି ଦେଇ ପଡ଼େ ମରିଯିବି, ଏମିତି ହତାଶା ଜୀବନ ରଖି ପାରିବି ନାହିଁ ।

ଜମ୍ବୁକନ୍ତ କହିଲା—ଏଁ ଏଁ, ଏ କି କଥା ! ଅଚ୍ଛା, ବାଉଳମା ସୁଣି ହାତରେ କଣ ପଇସା ନାହିଁ ? ସମସ୍ତେ ଯେ କହୁଛନ୍ତି—ଗୋଟାଏ ଭାରି ବଡ଼ଲୋକ ତାଙ୍କୁ ବହୁତ ଟଙ୍କା ଦଉଚି,—ଯୁକ୍ତି ଉପରେ ତାର ମିର୍ ସୁନାକାର, ଏସବୁ କଥା କଣ ସତ ନୁହେଁ ?

ବାଉଳାମା କହିଲା—ହାୟରେ ହାୟ ! ଲୋକେ କଣ ନ କୁହନ୍ତି ! କୁଆ ଉଡ଼ିଗଲେ, କୁଆ ଉଡ଼ିଗଲା । ଏଇତ ଏ ସଂସାରର ଲକ୍ଷଣ । ତେବେ ଭାଇ, କଥାଟା ଏତିକି ଯେଉଁ ଯେ ଗଲାବର୍ଷ କାଳ ବଢ଼ିଆ ମାଡ଼ିଆସି ସବୁ ଛାରଖାର କରି ଦେଇଗଲା, ଯେତେବେଳେ ଲୋକଙ୍କୁ ଖାଇବାକୁ ବାଣ୍ଟିବାପାଇଁ ବାବୁ ପଞ୍ଚାଏ ଆସିଥିଲେ, ଠିକ୍ ସେତେବେଳେ ସଉଦ ଅପାର କାଳ ହୋଇଗଲା । ତାଙ୍କ ଭିତରୁ ଗୋଟିଏ ବାବୁ—ଭାରି ଦୟାବାନ୍, ବଂଶୀର ଦୁଃଖ ଦୁର୍ଦ୍ଦଶା ଦେଖି ସେତେବେଳେ ସାହା ଭରସା ହୋଇଥିଲା । ବାବୁଟି ନୂଆ ଉପକାର କରନ୍ତି । ବଡ଼ଲୋକ ଘର ପୁଅ, ତାର କେଉଁ କଥାର ଅଭାବ ? ଦେଖିଲା ଯେତେବେଳେ ଅପେଖାଟି ମଡ଼ି ଦରିଆରେ ଭାସି ଯାଉଛି ସେତେବେଳେ ପାଖରେ ଛିଡ଼ାହୋଇ ହାତ ବଢ଼େଇ ଦେଇଥିଲା । ତେବେ ସେଇ କଥାଟିକୁ ନେଇ ସମସ୍ତଙ୍କର ଆଜ ଚହଲ ପଡ଼ିଛି । ହାୟରେ ଗାଁ ଖଣ୍ଡିକ । ଭଲଟିଏ ପାଇଲେ ତାକୁ ଡାଲ କରି ଥୋଇବେ । କି ? ସେ ତ ପରପୁଅ, ଆପଣାର କିଛିତ ନୁହେଁ ଯେ କାଳ କାଳକୁ ଭରସା ହୋଇଥିବ । କହିଲା—"ପର ପୁଅ, ସାର ଚଢ଼େଇ, ଉଡ଼ିଗଲେ ଯାଏ, ଅଙ୍କା ହୋଇ ମନୁଷ ମୋ ଗୁହି

ରହୁଥାଏ ।" ସବୁ ଦିନକୁ ଯେ ସାହା ହୋଇଥିବ ବୋଲି କଣ ଲେଖିଦେଇଛି ? ନା, ତା ଉପରେ କାହାର ଜୋର ଜୁଲମ ଯାଏ ? ସଂସାରରେ ଘର କରିଥିଲେ ଆପଣା କପାଳ ଆପଣାର । ନା, ଭଇଭାଇ ମୁଁ ମିଛ କହୁଛି ।

ଜମ୍ବୁକୃଷ୍ଣ କହିଲା—ମିଛ କାହିଁକି ହେବ ଭଉଣୀ ! ତେବେ କଣ କି କଥାଟା ଭଲ ହେଲା ନାହିଁ । ଯଦି ସେମିତି ଗୋଟାଏ ଭାବ ପ୍ରୀତି ଲାଗିଯାଇଥିଲା, ତେବେ ସେଟା ଭାଙ୍ଗିଦେବା କଅଣ ଭଦ୍ରଲୋକର କାମ । ଅଭିଆଡ଼ା ଝିଅଟା ଏହିଲାଗେ କାହା ଦୁଆରେ ଯାଇ ଛିଡ଼ା ହେବ ?

ଜମ୍ବୁକୃଷ୍ଣର କଥାର ଗତି କେଉଁଆଡ଼େ ଯାଉଛି, ତା ବୁଝିପାରି ବାଉଳମା ଚମକି ଉଠିଲା । ଆଉ ଅଧିକ ସେ ବିଷୟ ଚର୍ଚ୍ଚା କରିବା ବାଞ୍ଛନୀୟ ମନେକରି ସେ ଧୀରେଇ ଦେଇ କହିଲା—ସେଥିଲାଗି ମୁଁ କହୁଛି, ଭଇଭାଇ, ତମର ଆଉ ଏଠି ପଢ଼ା ଯାଇବାଣୀ ହେବାଟା ଶୋଭାପାଏ ନାହିଁ, ବେଳ ଥାଉଁ ଥାଉଁ ତାର ବନ୍ଦୋବସ୍ତ କରିବା ଦରକାର ।

କହୁ—"ତୁ ଯେତେ ନାଚିବୁ ନାଚ, ମୁଁ ସେଇ ଦରଯୋଡ଼ା କାଠ ।" ଜମ୍ବୁକୃଷ୍ଣ ଏ କଥାରେ ଭୁଲିବାର ପାତ୍ର ନୁହେଁ । ସେ ନିଘରେ ହାତ ମାରିଦେଇ କହିଲା—ଅନ୍ଧୁଆର ବାଉଳମା, ଅନ୍ଧୁଥର, ମୁଁ ସବୁ ଠିକ୍ କରି ଦେଉଛି ।

ଏହା କହି ସେ ଘରୁ ବାହାରିପଡ଼ିଲା ।

ପରଦିନ ସେ ନିବେଳାରେ ସୁଷମା ନିକଟକୁ ଯାଇ କହିଲା —ସୁଷମା, ଗୋଟାଏ ଭଲ ଉପାୟ ଭାବି ଭାବି ମୁଁ ସ୍ଥିର କରିଛି । ତୋତେ କେମିତି ଲାଗୁଛି କହିଲୁ ?

ସୁଷମା ପଚାରିଲା—କି ଉପାୟ ଭଇଭାଇ ?

ଜୟକୃଷ୍ଣ କହିଲ—ଚାଲ, ମୋ ସାଙ୍ଗରେ କଲିକତା ଚାଲ । ଚିନ୍ତା କରିବାର କିଛି କାରଣ ନାହିଁ । ବୁଝିଲୁ ସୁଷି, ସେ ଭଳି ଜାଗାରେ ପେଟ ଅପୋଷା ରହେ ନାହିଁ । କପାଳରେ ଥିଲେ ତୋପରି ଗୋଟାଏ ଲୋକ ଯେଉଁଠି ଧନ ଦ'ହାତେ ଲୁଟପୁଟ ହୋଇ ବସିଯିବା ବିଚିତ୍ର ନୁହେଁ । ତେବେ ବଡ଼ ବଡ଼ ଲୋକ, ରଜା ମହାରଜାଙ୍କ ରହୁଛନ୍ତି ସବୁ ! କାହାରି ସୁନଜର ପଡ଼ିଗଲେହିଁ ହେଲା ।

କାଳିକୃଷ୍ଣ ଜୟକୃଷ୍ଣଙ୍କୁ ପୋଲପଣ ଧାରଥିଲେ ।

ମାତ୍ର ଜୟକୃଷ୍ଣର କଥାଟା ଶୁଣି, ସୁଷିର ଅନ୍ତରଆତ୍ମା ଘୃଣାରେ ବାରମ୍ବାର ଜର୍ଜର ହୋଇ ଉଠିଲା । ଛି ଛି ଛି, କି କଦର୍ଯ୍ୟ ପ୍ରସ୍ତାବ ! ପୁଣି ଯେ ସୁଷିର ଭାଇବୋଲି ନିଜର ପରିଚୟ ଦିଏ ! ଏଭଳି କଥା ତୁଣ୍ଡରେ ଆଣିବାପୂର୍ବରୁ ସେ ମର ମାଟିରେ ମିଶି ନ ଗଲା କାହିଁକି ? ଆଉ ସୁଷି ବା କାହିଁକି ବଞ୍ଚିରହିଲା ଏସବୁ ଶୁଣିବାପାଇଁ ? ଛି ଛି ଛି ! ସୁଷି ଆଉ ସେଉଠି ଠିଆ ହୋଇପାରିଲା ନାହିଁ । କଣ କହି ପଳେଇବ ତାକୁ ବୁଝିବାକୁ ଦେଖାଗଲା ନାହିଁ । ଏହିପରି ସମୟରେ ବାଉଳମା ଆସି ଡାକ ଦେଲା—ସଣି ! କୁଆଡ଼େ ଗଲ ?

ସୁଷି ନମ୍ରତାର ସହ କରି "ଏଇ ଯାଉଛି" ବୋଲି କହି, ଏକ ନିଃଶ୍ୱାସରେ ପଳେଇଗଲା ।

---

## ଏକବିଂଶ ପରିଚ୍ଛେଦ

"କୁଆଡ଼େ ଚଲ ହେ ବାବା ଜୟକୃଷ୍ଣ ?"—ବୋଲି ବାହାରୁ ଡାକ ଦେଇ ଦେଇ, ଶାଗୁଆନକାଠର ବାଡ଼ିଖଣ୍ଡ ଭୂଇଁରେ ଠକ୍ ଠକ୍ କରୁଁ କରୁଁ ଘରଭିତରକୁ ପଶିଆସିଲେ ବୁଢ଼ା ଶମ୍ଭୁନାଥ ଶତପଥୀ । ଶମ୍ଭୁନାଥଙ୍କ ସମବୟସୀ ଲୋକ ଆଖ ପାଖ ପାଞ୍ଚଖଣ୍ଡଗାଁରେ

ନୁହ କାହିଁ ଅଛନ୍ତି,—ବୟସ ସତୁରିର ଦେଶ ପାଖ। ଜାତରେ ବ୍ରାହ୍ମଣ, ମୋଟା ଅନେକ ରକମ। ଚଣ୍ଡୀପାଠଠାରୁ ଆରମ୍ଭକରି ହଣ୍ଡା ବଜା ପର୍ଯ୍ୟନ୍ତ ଶମ୍ଭୁନାଥ ସବୁ କରିପାରନ୍ତି। ନାନା ମନ୍ତ୍ର ତନ୍ତ୍ର ମଧ୍ୟ ଜଣା ବୋଲି ଅନେକଙ୍କର ମତ। ଘା ଶୁଖାଇବା, ସାପବିଷ ଝଡ଼ାଇବା, ପିଠିରେ ଥାଳୀ ଲଗାଇ ଦୈବାଦଗ୍ଧ ବ୍ୟକ୍ତିର ବିଷ କେତେ ଶରୀରରେ ପଶିଛି ତା ପ୍ରକାଶ କରିଦେବା, ଏକ ଦୁହାଁଳି ଗାଈର ଦୁଧ ହରଣକରି ଅନ୍ୟଗାଈର ପହ୍ନାରେ ଭର୍ତ୍ତି କରିଦେବା, ସୁନ୍ଦରୀ ଅର୍ଦ୍ଧସୁନ୍ଦରୀ ବିଧବାମାନଙ୍କୁ ନେଇ କଳିକତାପରି ମହା ମହା ନଗରୀମାନଙ୍କୁ ଚାଲାଣ କରିବା ଇତ୍ୟାଦି ଇତ୍ୟାଦି ଅନେକ ସତ୍କର୍ମ କରି ମୁଣ୍ଡିଆ ସମନ୍ତଦାଳ ପାଶ ଦକ୍ଷତାଳରୁ ଶ୍ରେଷ୍ଠ ହେଲେଣି। ଶମ୍ଭୁନାଥ ବିଦାହେଲେ ବିପରୀତ ଦୋହଲଦେଇ ତେହେଲଦେଇ-ମାନଙ୍କର ପରମ ଉପକାର ହୁଏ। ଯେହି ଏକାଙ୍ଗ ବିହଙ୍ଗମନ୍ତ୍ରକପାଇଁ କୋଶଠାରୁ କେତେଦିନରେ ମାତମଣ୍ଡଳୀ ବିହଙ୍ଗମାଟିଏ ମିଳିବ, ତାର ପୂର୍ଣ୍ଣାନୁପୂର୍ଣ୍ଣ ତତ୍ତ୍ୱ ରଖନ୍ତି ଏହି ବିପ୍ରବର ଶମ୍ଭୁନାଥ। ଅଧିକ ବୟସର ଲୋକ ପତ୍ନୀ ବିୟୋଗରେ ପଡ଼ି ପୁନର୍ବାର ଗୃହସଂସାରଟି ଗଢ଼ିବାପାଇଁ ଆକୁଳହୋଇ ଧରିବସନ୍ତି ତାଙ୍କୁ। ସେଥିପାଇଁ ତାଙ୍କ ପ୍ରାଣରେ ହାତରେ ଶହେ ପଚାଶ ଗୁଞ୍ଜିଦେବାକୁ କି କୁଣ୍ଠା ବୋଧକରନ୍ତି ନାହିଁ। ଏଥିରୁ ଶତପଥୀଙ୍କର ଦୁ'ପଇସା ଭଲରକମ ହାତପେଠ ହୁଏ। ଦୁଷ୍ଟଲୋକେ ନାନାକଥା କହିଲେ ସୁଦ୍ଧା ତାକୁ ସେ ତିଳମାତ୍ର ଭ୍ରୂକ୍ଷେପ କରନ୍ତି ନାହିଁ। ହସି ଉଡ଼ାଇଦିଅନ୍ତି। ବୁଦ୍ଧିବିହୀନ ପରଶ୍ରୀକାତର ଲୋକଙ୍କର ଏହାଟା ସ୍ୱଭାବ ଦୋଷ ବୋଲି ମନେ କରି ସେ ତାକୁ ପଛକୁ ପକାଇଦେଇ ସଂସାର ପଥରେ ବୀରବିକ୍ରମରେ ଅଗ୍ରସର ହୁଅନ୍ତି।

ଶମ୍ଭୁନାଥଙ୍କ ଡାକଟା ଶୁଣି ଜୟକୃଷ୍ଣ ଘରୁ ବାହାରିଆସି,—"ଓହୋ ଶମ୍ଭୁ କକା ଯେ" ବୋଲି କହି ଓଳିପିଡ଼ାଏ ଦେଲା । ତା ପରେ କୌତୂହଳୀ ହୋଇ ପଚାରିଲା—ଏ ଅବେଳରେ ଆଜି କୋଉଁଠି ଗଡ଼ ପଡ଼ିଲ କି କକା ?

ଶମ୍ଭୁନାଥ ଜବାବ୍ ଦେଲେ—ଅନେକ ଦିନରୁ ଆସି ନ ହେଲା ମୁଁ, ଟିକିଏ ଚାଲି ଆସିଲି । ଭାବିଲି—ବହୁତ ଦିନ ପରେ ବାପା ଜୟକୃଷ୍ଣ ଘରକୁ ଫେରିଛନ୍ତି,—ଟିକିଏ ଦେଖାଟା କରି ଦ'ଟା କଥାଭାଷା ହୋଇଆସେଁ । ଦିନ ଦଶପରେ ତୁଏ ତ ତମେ ଚାଲିଯିବ, ଟିକିଏ ସାକ୍ଷାତ ହେବା । ପୁଣି ଆମର ବା କଣ ଅଉ ଦିନକାଳ ଅଛନ୍ତି ! ପାକଲ ତାଳ, ଅଜ ଅବା କାଲି ଖସିଗଲେ ଗଲା । ଏଣୁ ସବୁ କଥାକୁ ଲକ୍ଷ୍ୟ କର,—ବୁଝିଲ ନା ବାପା ।—ଅରେ ! ଏ ମୋର ମା ସୁଷମାରାଣୀ ନା କିଏ ରେ ?

ଅକସ୍ମାତ୍ ସୁଷମା ଆସି ଉପସ୍ଥିତ ହୋଇଯିବାରୁ କଥୋପକଥନର ଗତି ବଦଳିଗଲା । ଶମ୍ଭୁନାଥ ଦନ୍ତବିହୀନ ତୁଣ୍ଡରେ ହାସ୍ୟର ଅପରୂପ ପ୍ରଭା ବିସ୍ତାର କରି କହିବାକୁ ଲାଗିଲେ—ବାଃ, ଖୁବ୍ ବଡ଼ଟିଏ ତ ହୋଇଗଲୁଣି ମା । ମୁଁ କହେଁ, ଆହେ ବାପା ଜୟକୃଷ୍ଣ ! ତମେ ତ ଭାଗ୍ୟକୁ ଆସି ଯାଇଛ । ମାଆଟିର ମୋର କିଛି ଗୋଟାଏ ଭଲକିନାରା କରିଯାଅ ଭଲା । ଅଉ କେତେକାଳ ଅନେଇ ବସିଥିବ । କହିଲା ପରା—"ଝିଅ ଘରେ ରହିଲେ ଅଡ଼ୁଆ, ଘିଅ ଘରେ ରହିଲେ କଡ଼ୁଆ ।"

ସୁଷି ଶମ୍ଭୁନାଥଙ୍କ ପାଦତଳେ ଗୋଟାଏ ମୁଣ୍ଡିଆ ମାରି ଚଞ୍ଚଳ ଚଞ୍ଚଳ ପଳାଇଗଲା । କଥାଗୁଡ଼ାକ ତାକୁ କର୍ଣ୍ଣମୂଳରେ ପିଟିବା ଭଳି ଲାଗିଲା । ତା ପରେ ସେ ଅଳ୍ପ, କିପରି ଅନ୍ୟଲୋକର ଅଡ଼ୁଆ ହେଲା ତାହା ସେ ବୁଝି ପାରିଲା ନାହିଁ ।

ଶମ୍ଭୁନାଥ ଏହାପରେ ସ୍ୱରଟା ଖୀଣକରି କହିଲେ
ବାପା, ଆଜିଠାରୁ ଲାଗି ପଡ଼ିବ । ଆଉ, ତମେ ବୁଝୁଁ ତ
ମୁରବି, ଆଉ ଆପଣାର କିଏ ଅଛି ? କିଏ ଏସବୁ କ
କରିବ ? ଝିଅଟା ଦିନକୁ ଦିନ ଯେପରି ବଢ଼ି ଉଠୁଛି କେତେ
କଣ ? ଆଜି କାଲି ଯୁଗର କଥା କଣ ବୁଝିନାହିଁ ? ସାକ୍ଷାତ
ମୂର୍ତ୍ତି ପରି ଦେଖାଗଲଣି ପରା ! ବଡ଼ ବିପଦ ବାପା, ବଡ଼ ବି
ନା, କଣ କହୁଛ ?

ଶମ୍ଭୁନାଥ ପ୍ରଶ୍ନର ଉତ୍ତରକୁ ଅପେକ୍ଷା ନ ରଖି, ଆହୁରି ଟିକି ପାଖକୁ ଘୁଞ୍ଚିଆସି, ବାଡ଼ନୀତ୍ର ଘୁଞ୍ଚାଇଆଣି, ଅତି ଗୋପନରେ କାନେ କାନେ କହିବାକୁ ଆରମ୍ଭ କଲେ—ବାପା, ଗୋଟାଏ ଲାଏକ ପାତ୍ର ବି ହାତରେ ଅଛି । ଧରି ବସିଲେ ଟଙ୍କା ଗୁରଣରୁ କାଉଡ଼ିଟାଏ ଊଣା ହେବ ନାହିଁ । ଲୋକଟାବି ସେ ପକ୍ଷରେ ଦିଆଲୁ । ଧନ ଅମାପ । ଅମାର ଅମାର ଧାନ ଠେସି ଦେଉଛି । ମହାଜନି କାରବାର । ନିତି ନିତି ଗୋଡ଼ତଳେ ଟଙ୍କା ପଇସା ଆସି ଝମ୍ ଝମ୍ ହୋଇ ପଡ଼ୁଛି । ତେବେ କଅଣ କି ଦୋହଲରେଇ । ହେଲେ, ବୟସ ବେଶି ନୁହେଁ, ପଚାଶ ପୂରି ନାହିଁ । ପୁରୁଷ ପୁଅର ବୟସ କି ଧରାଯାଏ ବାପା ? ମୋ ଦେଖିଲାରେ ଲୋକେ ବାଷଠି ବର୍ଷରେ କାର୍ତ୍ତିକେୟ ପରି ପୁଅର ବାପ ହୋଇଚାନ୍ତି,—ଚତୁର୍ଥ ପକ୍ଷର ସ୍ତ୍ରୀ ପ୍ରସବ କରି ଥୋଇ ଦେଇଛି । ଆଉ ଏ ବା କେତେ ? ତେବେ, କଣ ବାପା, ଚେଷ୍ଟାଚରିତ୍ର କରି ଦେଖିବା ? ମୁଁ କହି ରଖୁଛି—କାନମୋଡ଼ି ଗୋଟିଗଣା ଗୁଣିଗୁଣି ଟଙ୍କାଟି ଆଦାୟ କରିଦେବି । ଏ ଶମ୍ଭୁନାଥ ଶତପଥୀ, ଯାହା କଥାର ଏପାଖ ସେ ପାଖ ନାହିଁ ।

ଏହା କହି ଶମ୍ଭୁନାଥ ବାଡ଼ଧରି ଉଠିବାକୁ ଉଦ୍ୟତ ହେଲେ ଏବଂ ଛୁଞ୍ଚା ହୋଇପଡ଼ି କହିଲେ—ଏହିକ୍ଷଣି ଜବାବଟା ଦେବାକୁ

୍ର ବାପା । ଏସବୁ କଥା ଭାବିଚିନ୍ତି ଦେଖିବାକୁ ସମୟ
ଏଲ କରି ଭାବ । କାଲି ସାରି କରି ମୋତେ କହିବ । ଆଉ
।କ ସହିତ ତ ପରାମର୍ଶ କରିବାର ନାହିଁ । ମୁଁ ଯା କହୁଛି
ଧ ବୋଲି ଏକମାତ୍ର ତମେ । ତମେ ଯାହା ସ୍ଥିର କରିବ ତା
। ଅଚ୍ଛା, ମୁଁ ଆସେଁ ବାପା, ଭାବି ଚିନ୍ତି କହିବ । କାଲି ଦେଖା
ବ ତ ?

ଜୟକୃଷ୍ଣ କହିଲା—ହଁ କକା, କାଲି ଏତିକି ବେଳକୁ
ଥିଲେ ହବ ।

"ଅଚ୍ଛା, ଅଚ୍ଛା" ବୋଲି କହି ଶତପଥୀଏ ବିଦା ହେଲେ । ଜୟକୃଷ୍ଣ ଉଠି, ପାଞ୍ଚିକରି କହିବାକୁ ଲାଗିଲା—କି ଅକଲ ଏତେ ବଡ଼ ଝିଅଟାର ବାବା ! ଆଖିରେ ଦେଖିଗଲା—ଶତପଥୀଏ ଆସି କଥାଭାଷା ହେଉଛନ୍ତି । ଗଣ୍ଡେ ପାନବି ଆଣି ଦେବାକୁ ବୁଦ୍ଧି ହେଲା ନାହିଁ । ଧିକ୍ ସେ ବୁଦ୍ଧିକି ।

ଝୁଷି କଥାଗୁଡ଼ାକ ଶୁଣି, ନ ଶୁଣିଲା ପରି ଚୁପ୍ ରହିଲା ।

ସେ ଦିନ ରାତିରେ ଜୟକୃଷ୍ଣକୁ ଆଉ ନିଦ ହେଲା ନାହିଁ । କେବଳ ମନେ ପଡ଼ିଲା—ଶମ୍ଭୁନାଥଙ୍କ ଆଶାମୟୀ ବାଣୀ । ଆଖି ଆଗରେ ନାଚି ଉଠିଲା—ଗୋଟି ଗୋଟି ହୋଇ ଚୁରିଶହ ଟଙ୍କା । କି ସୁନ୍ଦର ପ୍ରସ୍ତାବ ! ଏକାଥରକେ ଚୁରିଶହ ଟଙ୍କା ତାର ହାତ ମୁଠା ଭିତରକୁ ଅସିଯିବ । ଅଉ ବସିଲେ, ଚୁରିଶହରୁ ବଢ଼ି ବଢ଼ି ପାଞ୍ଚ ଶହରେ ଯେ ନ ଉଠିବ ତା କିଏ କହିବ ? ଶମ୍ଭୁନାଥ ଶତପଥୀ ଯେଉଁଠି ମଧ୍ୟସ୍ଥ, ସେଭଳି ଜାଗାରେ ତା ହେବା ବିଚିତ୍ର ନୁହେଁ । ଲୋକଟାକୁ ସେ ସବୁ କାଇଦା କଟକଣା ଭଲରୂପେ ଜଣା । କିପରି ଲୁହାରେ କି ଭଳି ପାଣି ଦିଆଯାଏ, ତା ସେ ଜାଣେ । ଏପରି ଗୋଟାଏ ବାଗ ଛାଡ଼ିଦେବା ବୁଦ୍ଧିମାନର କାର୍ଯ୍ୟ ନୁହେଁ ।

ଜୟକୃଷ୍ଣ ଭାବିଲା—ଏହିଟା ଠିକ୍ ଉପାୟ । ସେ ଦିନ ସେ ଯେଉଁ ପ୍ରସ୍ତାବଟା କରିଥିଲା ଅର୍ଥାତ୍ ସୁଷିର କଲିକତା ନିବା ପ୍ରସ୍ତାବ, ସେଟା ଠିକ୍ ଜାଗାରେ ବସା ହୋଇ ନ ଥିଲା,—ଯୁକ୍ତି ସେପାର ସାମ୍ନାପଡ଼ାଳି ନୁହେଁ,—ବେଅକ୍କଲ ନିଆଁକୁ ଡେଇଁ ପଡ଼ିବାର ସାହସ ତାର ନାହିଁ । କଲିକତା ନାଁଟା ଶୁଣି ତାର ମୁଣ୍ଡରେ ଚେଙ୍ଗୁଲିଆ ବଗ୍ଧି ବାନ୍ଧିଦେଲା,—ସେ ଛଟିପଟି ହୋଇ ପଡ଼ିଲା । ତାର କଲିଜା ବଡ଼ ନରମ୍ । ଖାଲି ରୂପ ସିନା ଅଛି, ଗୁଣ ନାହିଁ । ସେ ସେହି ପୁରୁଣା କାଳର ସାବିତ୍ରୀ ଠାକୁରାଣୀ,—ଏ ଯୁଗର ଦମ୍ଭବାଲି ନୁହେଁ । ଫନ୍ଲର ଗୋଡ଼ କାଢ଼ି କଲିକତା ରେଙ୍ଗୁନକୁ ଠେଲିଦେବା, ଆଉ ଆପଣାର ନଫିକୁ ତା ରାସ୍ତାରେ ଛାଡ଼ିଦେବା ହୋଇଲେ ଯେଉଁ କଥା ତା ସୁଖେ ଭଲ ଲୋକଦ୍ୱାରା ହେବାର ନୁହେଁ । ଏଣୁ ସନ୍ଧ୍ୟାଟା ଜୟକୃଷ୍ଣ ଚଳିତର୍ଦ୍ଧି କରିଗଲା । ଆଉ ଦେଖିଲା—ଏଥିରେ ପୁଅମାନଙ୍କର ନିଜର ଲାଭ ରହିଛି । ସେ ହେଉଛି ସର୍ବବାଦୀସମ୍ମତ ମୁରବି । ଠିକାଟା ତାହାର ହାତରେ ପଡ଼ିଲେ କେତେ କାମ ଦେଖାଇବ । ଅବଶ୍ୟ, ବନ୍ଧୁବର୍ଗଙ୍କରେ ଗୁଳାଗ ପରୁଣ ଉଡ଼ିଯିବ । ଗଲେ ଯାଉ, ବାକିଟା ତ ହାତ ମୁଠାରେ ରହିବ । ସେତିକି ଧରି କଲିକତା ସହରରେ ଯାଇ ଦାଲିଏ ଦରାଜ ଖୁଆଟେବୁଲରେ ବସିଗଲେ ତେଣିକି ନେଉଥା' । ଏହି ବାଟରେ ଯାଇ ତ ଦୁଣି ଲୋକେ ବଡ଼ ଲୋକ ହୋଇ ବସିଛନ୍ତି, ସେ ବା ନ ହେବ କାହିଁକି ? ଏହା ଭାବି, ଠିକାଟା ହାତକୁ ଆସିଗଲେ ବୈନିକ ଅନ୍ନଯୋଗ ସେଦିନର ମାସା ଆଉ ଟିକିଏ ବଢେଇଦେଇ, ଜୟକୃଷ୍ଣ ଦେହରେ ଟିକିଏ ତାକତ ଆଣିବାକୁ ମଧ୍ୟ ସଙ୍କଳ୍ପ କରିଦେଲା ।

ପରଦିନ ଚା ପାନ କରସାରି ସେ ଖୁସି ମନରେ ବାଉଳିମାକୁ ଡାକି କହିଲା—ବୁଝିଲୁ ନା ବାଉଳିମା, କଲିକତା ଛାଡ଼ ଆଉ

ବେଶିଦିନ ଏଠି ରହିବାକୁ ମନ ହେଉ ନାହିଁ । ଖାଲି ପଳେଇ ଯିବାକୁ ଆତ୍ମା ଡାକୁଛି । ଡେରଦିନର ମାୟା କି ନା । ଗୋଟାଏ ଲୋକର ମାୟା ଯେମିତି, ଗୋଟାଏ ସ୍ଥାନର ମାୟା ସେମିତି ଜାଣିବୁ । କହିବାକୁ ଗଲେ, ଏଇ ଚାରି ପିଲାଦିନରୁ ଯାଇ ସେ ସ୍ଥାନରେ ମୁକାମ କରି ହୋଇଛୁ ତ ! ଆଜି ଆଉ ତାର ମାୟା ଛୁଟିଲେ ଚଳିଛି କେତେଦିନକ ?

ବାଉଳିମା ମନେ ମନେ ଖୁସିହୋଇ କହିଲା---ହଁ ଭାଇ, ସେ କଥା ଠିକ୍ । ଯେ ପିଲାଦିନୁ ଯାହାର ଅନ୍ନ ଖାଇଆସିଲା, ତା ଭୂଇଁକୁ ଆଦର ଯେମିତି, ଯେ ଏତେକାଳ କଲିକତାରେ ରହିଆସିଲା ତା ପକ୍ଷରେ ଏ ମଫସଲ ଗାଁରେ ରହିବା ସେମିତି । ମୁଁ ସିନା କଲିକତା ଯାଇନାହିଁ, ହେଲେ ବାପ-ଦାଦାଙ୍କଠୁ ତ ଶୁଣିଛି । ବାପାଆଜ୍ଞେ ଅମର ସବୁବେଳେ କହନ୍ତି—ଯେ ଥରେ କଲିକତା ଯାଇଛି, ତାର ସହରକୁ ଯିବା ଆଉ ଦରକାର ନାହିଁ । ତମେ ମୋତେ କଅଣ କହୁଛ ? ତେବେ କେଉଁଦିନ ଯିବା କଥା ସ୍ଥିର କରୁଛ ଭାଇ ?

ଜଗନ୍ନାଥ ଗୋଟାଏ ହାଇମାରି ତୁଡ଼ି ଫୁଟାଇଲା । ତା ପରେ ଜବାବ ଦେଲା—ହେଲେ, ଯେତେ ଶୀଘ୍ର ଯିବାର ଇଚ୍ଛା ସେତେ ଶୀଘ୍ର ଯାଇହେଉନି କାହିଁ ଭଉଣୀ ? ଟିକିଏ କେଁ ଅଛି ପରା । ଏତେଦିନ ପରେ ଆସିଛି, ଗୋଟାଏ ସତ୍ପାତ୍ର ଦେଖି ସୁଜିତାକୁ ସମର୍ପଣ କରି ଦେଇ ନଗଲେ ଲୋକେ ବଡ଼ ନିନ୍ଦା କରିବେ । ଅସିଲା ଦିନରୁ ମୁଁ ସେଇ କଥା ଭାବୁଛି,—ହେଲେ କାହାରିକୁ କିଛି କହିପାରୁ ନାହିଁ । କଅଣ କରିବ ? ଗୋଟାଏ କିଛି ଯୋଗାଡ଼ ହେଲେ ତ କହିବ ? ନୋହିଲେ ସମସ୍ତେ ବୋଲିବେ ... ମୁଗୁଲାଖୋର, ଖାଲି ନିଆଁଲା କଥାଟି ଜାଣେ । ନା ଭଉ

ବାଉଳୀମା ମନରେ 'ସେଉଁ ଆନନ୍ଦରୁଦ୍ଧି ରେଖାଟିକ ସଦ୍ୟ ଦେଖା ଦେଇଥିଲା ତା ମଉଳିଯିବାର ଉପକ୍ରମ ହେଲା। କିନ୍ତୁ ସେ ତାର କୌଣସି ସୂଚନା ପ୍ରକାଶ ନକରି କହିଲା—ତେବେ କିଛି ଚେଷ୍ଟା-ଚରିତ୍ର କରୁଛ ନା କଣ? ଏତେ ଚଞ୍ଚଳ ସେପରି କିଛି ହେବାର ଆଶା ଅଛି ନା?

"ଅଛି, ଅଛି, ବାଉଳୀମା। ଦେଖାଯାଉ ପିଲାଟାର ଭାଗ୍ୟରେ କଣ ଅଛି।" —ଏହାକହି ଜୟକୃଷ୍ଣ ବାହାରକୁ ଯିବାର ଉଦ୍‌ଯୋଗ ଆରମ୍ଭ କରିଦେଲେ। ଅଳ୍ପଶବ୍ଦରେ ମଧ୍ୟ ଛଡ଼ିଖଣ୍ଡ ଧରି, ପାଦର ଚଟି ଦୟଟ ଚଟ୍ ଚଟ୍ କରି ବାହାରିଗଲେ।

ଠିକ୍ ସେତିକିବେଳେ କାହିଁକି 'କେଜାଣି ବାଉଳୀମାର ଅନ୍ତସ୍ତଳ ଆନ୍ଦୋଳିତ କରି ଗୋଟିଏ ନୈରାଶ୍ୟର ଦୀର୍ଘଶ୍ୱାସ ବାହାରି ପଡ଼ିଲା। ତାର କେତେ କଥା ମନେ ପଡ଼ିବାକୁ ଲାଗିଲା। ବିଶେଷ କରି ମନେ ପଡ଼ିଲା—ସେହି ଦିନର କଥା। ଯେଉଁ ଦିନ ମୁକ୍ତି ସହିତ ତାକୁ ହରିଶଙ୍କର ବାବୁଙ୍କ ଘରୁ ବିଦା ହୋଇ ଆସିବାକୁ ହେଲା। ଏହି ମୁକ୍ତିର ବିବାହ-ବ୍ୟାପାର ନେଇ ସେଦିନ ଏତେ ଗୋଳମାଳ। ଏହି ମୁକ୍ତିକୁ ବିବାହ କରିବାପାଇଁ ହରିଶଙ୍କରଙ୍କର ଏତେ ସ୍ପୃହା, ଏତେ ଅପୂର୍ବ ଅଭିନବ ଘଟଣା! ଶୂଦ୍ର କନ୍ୟାକୁ ଗ୍ରହଣ କରିବାକୁ ବ୍ରାହ୍ମଣ-ସନ୍ତାନର କି ଅଭିଳାଷ! ସେଥିପାଇଁ କି ହଟହଟା! କିନ୍ତୁ ଯେ ଏହି ହଟହଟାର ମୂଳ ସେ ଆଜି କୁଆଡ଼େ? ଏତେ ଆଗ୍ରହ କରି ଯେ ବିବାହ କରିବାକୁ ଉଦ୍ୟତ ଥିଲା, ସେ ଆଜି ଟିକିଏ ଦେଖାଦର୍ଶନ ନ ଦେଲେ ଗଲା। କେତେଥର ଚିଠି ପଠାଇଲି, ଘର ଭିତରକୁ ନ ପଶି ସେହି ଦିନରୁ ସେ ଯାଇଛି,—ଯାଇଛି। କିଏ ମରୁ ବା ବଞ୍ଚୁ, ତାର ଟିକିଏ ତଲାସ ନେଉ ନାହିଁ। ହାୟରେ, [illegible] ସେ ପୁଣି [illegible] ନବସମ୍ପଦାର ଆଶ୍ରୟ ହେବାକୁ ଆସିଥିଲା,—[illegible] ଲାଗି ରହିଥିଲା,—

ନିଜକୁ ଅନାଥର ଭରସା ବୋଲି ତାହାରିକୁ ପରିଚୟ ଦେଇଥିଲି ! ଧିକ୍, ଧିକ୍, ତାକୁ—ଶତ ଧିକ୍ ତାର ସେ ମୁଖା-ଢିଙ୍କା ମୁହଁଖଣ୍ଡିକୁ !

ବାଉଳିମାର ଅସ୍ଥି ମଜ୍ଜା ପର୍ଯ୍ୟନ୍ତ ଘୃଣାରେ ଜର୍ଜର ହୋଇ ଉଠିଲା । ମନରେ ଏକ କ୍ରୋଧ ଜାତ ହେଲା । ସୁଷମା ଉପରେ ବି ତାର ଭୟଙ୍କର ରାଗ ଚଢ଼ିଲା । କାହିଁକି ସେହି ଠକ୍‌କା କେତେଟା ସେ ହାତ ପତେଇ ସେ ଧନ ନେବାକୁ ଗଲା ? କାହିଁକି ସେ ତା ପିଙ୍ଗି ନ ଦେଲା ? ଗୋଡ଼ରେ ଦଳି ଦେଇ, ମଳି ଦେଇ, ସେହି ଦାତାଙ୍କ ଉପରକୁ ଫୋପାଡ଼ି ନ ଦେଲା ? ବାଉଳିମା ଆଉ ସମ୍ଭାଳି ପାରିଲା ନାହିଁ । ଡାକିଲା—ରାଣି !

ସୁଷମା ତାର କଣ୍ଠସ୍ୱରରେ ଗୋଟାଏ ଅସ୍ୱାଭାବିକତାର ଆଭାସ ପାଇଲା । ଜୟକୃଷ୍ଣ ସହିତ ତାର ଯେଉଁ କଥାବାର୍ତ୍ତା ଏହି ଘରେ ହୋଇଗଲା ତାହା ସେ ଅନ୍ୟ ଜାଗାରେ ଥାଇ ସବୁ ଶୁଣିଥିଲା । ବଡ଼ ବିଚଳିତ ହୋଇ ଶୁଣିଥିଲା । ଭାବୁଥିଲା—ଏ ପୁଣି ଭାଗ୍ୟର କି ନୂତନ ପରିହାସ ! ଭାଗ୍ୟଦେବତା ତାକୁ ନେଇ କି ଖେଳଟା ଖେଳୁଛନ୍ତି ! କେତେ ହସହସିଆ କରୁଛନ୍ତି । ସେ ହଟହଟାର ଯେପରି ସୀମା ନାହିଁ, ଶେଷ ନାହିଁ, ଅନ୍ତ ନାହିଁ, ଅନ୍ତ ନାହିଁ । କିଏ ଭାବିଥିଲା—ଏତେଦିନ ହେଲା ଯେ ଗୃହତ୍ୟାଗ କରି ଯାଇଛନ୍ତି, ଯାହାର ମୁଖର ଅକୃତିଟା ପର୍ଯ୍ୟନ୍ତ ଲୋକେ ଭୁଲିଯାଇଛନ୍ତି—ସେ ପୁଣି ଫେରିଆସିବ, ଅଦ୍ୟାପାରରେ ଦ୍ୟାପାର କରି ବସିବ । ସୁଷିର ସେହି ଶମ୍ଭୁନାଥ ଶତପଥୀଙ୍କ ଉପରେ ଘୋର ବିରକ୍ତି ଜାତ ହେଲା । ଏତେଦିନ ଯାଏଁ ସେ କୁଆଡ଼େ ଥିଲା ? ହଠାତ୍ ତାକୁ କାହିଁକି ତାର ବିବାହର ଚିନ୍ତା ଘାରିବସିଲା ? ସୁଷିର ଯେତେବେଳେ ଘୋର ଦୁଃଖର ସମୟ, ମା'ର ମୃତ୍ୟୁପରେ ସେ ଯେତେବେଳେ ଅକୂଳ ସମୁଦ୍ରରେ ଭାସମାନ, ସେତେବେଳେତ ସେ ମୁହୂର୍ତ୍ତିକ ପାଇଁ ଆସି ଦେଖାଦେଇ ନ ଥିଲା । ଆଜି ତାର ସହାନୁଭୂତି

କାହିଁକି ଉଚ୍ଛୁଳି ଉଠିଲା ? ହାୟ ! ଆଜି ବାରୁଦ ସହିତ ଅଗ୍ନିର ସଂଯୋଗ କାହିଁକି ଘଟିଲା ? ସେ ଥିଲା ଜୟକୃଷ୍ଣ ସଙ୍ଗରେ ତା ବିଷୟ ନେଇ ଚର୍ଚ୍ଚା କରିବସିଲା, ଦୁହେଁ ମିଳି ତାର ତିକ୍ତ ଜୀବନରେ ଅଧିକ ତିକ୍ତତା ଭରିଦେବାକୁ ଷଡ଼ଯନ୍ତ୍ର କଲେ । ଏମାନେ କେଉ ଅପଦେବତାର ଚର ? କି ଉପାୟରେ ସେ ଏମାନଙ୍କ ହସ୍ତରୁ ମୁକ୍ତି ପାଇବ ? ସୁଷିକୁ ବୁଦ୍ଧି ବାଟ ଦେଖାଗଲା ନାହିଁ । ତାର ପ୍ରାଣ ଭିତରେ ଘୋର ଅଶାନ୍ତି କୁହୁଳିବାକୁ ଲାଗିଲା ।

ଏହି ସମୟରେ ବାଉଳିମାର ଡାକ ଶୁଭିଲା । ସୁଷି କ୍ଷୀଣ କଣ୍ଠରେ ଜବାବ୍ ଦେଲା । ବାଉଳିମା ସମ୍ମୁଖରେ ଆସି ଉପସ୍ଥିତ ହୋଇ କହିଲା—ରାଣି ! ଗୋଟାଏ କଥା ଶୁଣିଗଲି ।

ସୁଷମାର ଅନ୍ତସ୍ଥଳ ଦୋହଲି ଉଠିଲା । କି କଥା ? କିଛି ଗୁରୁତର କଥା ନୁହେଁ ତ ? ସେ ସନ୍ଦେହ ସ୍ୱରରେ ପଚାରିଲା—କଣ ବାଉଳିମା ?

ବାଉଳିମା କହିଲା—ଅଚ୍ଛା ରାଣି, ତମେ ତ ପୋଥିପତ୍ର ପଢ଼ିଛ । 'ରାମାୟଣ' 'ମହାଭାରତ' ଗାଇ ଶିଖିଛ, ତମକୁ ତ ଜଣା ଥିବ—ମୂଳକରୁ ମୂଳକ କେମିତି ଗୁଣିଆ ହୁଏ ଜାଣିଲ ?

ଚିନ୍ତାଭାରଗ୍ରସ୍ତା ସୁଷିର ମୁହଁରେ ଈଷତ୍ ହାସ୍ୟରେଖା ଫୁଟି ଉଠିଲା । ସେ ବିଦ୍ରୂପ କରି କହିପକେଇଲା—ହଁ, ରାମାୟଣ ମହାଭାରତରେ ତ ସେ ସବୁ କଥା ଢେର ଢେର ଲେଖାହୋଇଛି, କାହିଁକି ?

''ତେବେ କହିଲ ରାଣି, କେମିତି ଚେଷ୍ଟା କରିବାକୁ ହୁଏ, କେଉଁଠି ଯାଇ କରିବାକୁ ହୁଏ ?''

ସୁଷି କୌତୂହଳୀ ହୋଇ ପଚାରିଲା—ଗୁଣିଆ ଜାରଟାଏ ଦରକାର ନା କଣ ?

ବାଉଳିମା—ହଁ, ରାଣି ।

କାହା ନାଁରେ ଲୋ ?

ସେହି ଭୁଲମନ ବାବୁଙ୍କ ନାଁରେ ।

ଦୂର ପୋଡ଼ାମୁହିଁ, ସବୁବେଳେ ସେହି ବାବୁ, ବାବୁ । ତୋ ମୁହଁରେ ସେ ନାଅଁ ଦେବେ ନା କଣ ଲୋ ?

ବାଉଳମା କହିଲା—ସେଇଟା ତ ଦେଲେ ଭଲ ହୁଅନ୍ତା ରାଣି ! ହରି ହରି ସେତକ ଦାକି ରଖିଲା କିଏଁ ଶୁଣେ ! ଦିନକ ପାଇଁ ଆସି ତମ ମୁହଁରେ ଆଉ ମୋ ମୁହଁରେ ସେତକ ଦେଇଗଲେ ତ ଯାଆନ୍ତା, ତେଣିକି ସେ ବି ଝଲସ୍, ଆମେ ବି ଖାଲସ୍ । କେହି କାହାରିକୁ କହିବାକୁ ନ ଥାନ୍ତା !

ଏହା କହି ବାଉଳମା ଗମ୍ଭୀର ହୋଇ ରହିଲା ।

ଅବୋଧା ନାରୀର ଅକୃତ୍ରିମ ସହାନୁଭୂତି ଲକ୍ଷ୍ୟ କରି ସୁଷମାର ଅନ୍ତଃକରଣ ଆର୍ଦ୍ର ହୋଇଉଠିଲା । ସେ ମୁହିଁ ନଇଁକି ତଳକୁ ପୋତି ଉତ୍ତର ଦେଲା—ଛି, ବାଉଳମା । ତାଙ୍କର କି ଦୋଷ ? ନିଜର କପାଳକୁ ନିନ୍ଦା ନ କରି ଅନ୍ୟଲୋକଙ୍କୁ ଦୋଷ ଦେବାଟା କି ଯାଜେ ?

ବାଉଳମା ଦୃଢ଼ସ୍ୱରରେ କହିଲା—ଯାଜେ, ରାଣି ! ଯାଜେ । ତମକୁ କେବେ କହିନାହିଁ, ଆଜି କହୁଛି—ଯେଉଁ ଦିନ ସେ ମୋତେ ଆଣି ଏଇ ଘରେ ରଖିଗଲେ, ସେ ଦିନ କଣ କହିଥିଲେ ଜାଣ ? କହିଥିଲେ—"ବାଉଳମା, ସୁଚିର ମା ତ ଘରେ ନାହିଁ । ଆଜି ତୋତେ ତାର ମାଆ ହୋଇ ବସିବାକୁ ହେବ । ତାର ସମସ୍ତ ଭାର ତୋ ଉପରେ, ଆଉ ମୋ ଉପରେ ରହିଲା । ତାକୁ ନିଜ ଝିଅଟି ପରି ଦେଖିବୁ । ମାଆର ଅଭାବ ତାକୁ ଯେପରି ନ ବାଧେ ।" ଯେ ବାବୁ ଏତେ କଥା କହି ନିଜର ମଣିଷ ହୋଇ ବସିଥିଲ,—ପୁଣି, ନିଜଠାଁ ପାଇଁଟି ବଡ଼ ହେବ ବୋଲି ମନ କରିଥିଲ, ସେ ଆଜି ଏତେ ନିଦୟା ପାଲଟି ପାରେ ! ଅଚ୍ଛା, ତୁ ଁ ଗ୍ଲେଇରେଁ ତାର କଣ ବା ଅସାଧ୍ୟ ଥିଲା ?

ନିଜେ ବିଭାହେବା କଥା ଯଦି ନୋହିଲା,—ଆଉ, ତା ବା କେମିତି ହୁଅନ୍ତା ?—ବ୍ରାହ୍ମଣ ଦରକୁ ଶୂଦ୍ର କନିଆ ! ତେବେ ପଇସା ଖର୍ଚ୍ଚ କରି ସେ ତ ଭଲ ପାଣଟିଏ ଦେଖି ତାହାର ହାତରେ ସଅଁପି ଦେଇ ପାରିଥାନ୍ତା । ତା ନ କଲା କାହିଁକି ? ପୁଣି ଏଠି ଆଣି ମକେଇ ଏମିତି ହଇରାଣ କରିବାର ମତଲବ୍ କଣ ? ସେଥିଲାଗି କହୁଥିଲି—ଗୋଟାଏ ହୁଲିଆ କରି ଆଣିବାକୁ । ଏବେ ମୋ ଆଗକୁ ଆସିଲେ ଜମିଦାର ପୁଅଟିର ଅକଲ ଗୁଡ଼ୁମ୍ କରି ଦଅନ୍ତି । ସେଠା କଣ ହୋଇପାରିବ ନାହିଁ ଲଣି ?

ସୁକ୍ତି ସହିତ୍ର 'ନା' ବୋଲି କହି ବାଉଳିମାର ମୁହଁକୁ ଅନାଇ ରହିଲା । ସତେ ଯେପରି ସେହି ବୃଣାବରକ୍ତମୂର୍ତ୍ତି ମୁହଁ ଖଣ୍ଡିକରେ ତାର ମାତୃମୂର୍ତ୍ତି ପ୍ରତିବିମ୍ବିତ ଦେଖିପାରିଲା । କ୍ଷଣକ ଅନ୍ତେ ସେ ଗଦ୍‌ଗଦ ସ୍ୱରରେ କହିଲା—ଆଜିଠାରୁ ତୋତେ ମା ବୋଲି ଡାକିବି ବାଉଳିମା, ତୁ ମୋର ମା ।

ବାଉଳିମା ତାକୁ କୋଳକୁ ଟାଣି ନେଇ କହିଲା—ମୁଁ କି ସତେ ଏତେ ଭାଗ୍ୟବତୀ ରେ ଲଣି !

ସୁକ୍ତି ଉତ୍ତର ଦେଲା—ହୁଁ, ହୁଁ । ଏହା କହି ସେ ତାର ବକ୍ଷ ଉପରେ ମୁହଁଟି ଥାକି ଦେଇ ନିମୀଳିତ ନେତ୍ରରେ ତାକୁ ଆଉଜି ରହିଲା ।

---

## ଦ୍ୱାବିଂଶ ପରିଚ୍ଛେଦ

ରାଧାପ୍ରିୟାଙ୍କ ପାଦତଳେ ନୀରବ ପ୍ରଣତଟି ଉପହାର ଦେଇ ଯେଉଁଦିନ ସୁଷମା ହରଶଙ୍କରଙ୍କ ସାଙ୍ଗରେ ବନା ଅଟଉଡରେ ବାହାରି ଆସିଲା, ସେହିଦିନଠାରୁ ରାଧାପ୍ରିୟାଙ୍କ ମନରେ ତିଳାର୍ଦ୍ଧ ଶାନ୍ତି ନ ଥିଲା । ଦୈନନ୍ଦିନ କାର୍ଯ୍ୟକଳାପରୁ ତାର ବିଶେଷ କିଛି ସୂଚନା ହୁଥ.ମ

ପ୍ରଥମେ ମିଳୁ ନ ଥିଲା । ତାର କାରଣ, ସେ ନିଜକୁ ସଂଯତ କରି ରଖିବାକୁ ପ୍ରାଣପଣେ ଚେଷ୍ଟା କରୁଥିଲେ । କିନ୍ତୁ ପ୍ରାଣର ଅଶାନ୍ତି ଅଧିକ ଦିନ ସଂଯମ ମାନି ଚଳେ ନାହିଁ । କ୍ରମେ କ୍ରମେ ତାହା ପ୍ରକାଶିତ ହେବାକୁ ଆରମ୍ଭ କଲା । ସୁବିଧା ପାଇଲେ ରାଧାପ୍ରିୟାଙ୍କ ଅଜ୍ଞାତସାରରେ ତାହା କଥାରେ ପ୍ରକାଶିତ ହୋଇପଡ଼େ । ସେଥିରେ ବାଧା ପଡ଼ିଲେ ତାହା କାର୍ଯ୍ୟରେ ଫୁଟିଉଠେ । କାର୍ଯ୍ୟରେ ଓ କଥାରେ ସତର୍କତାର ବେଷ୍ଟନୀ ଯଥାସମ୍ଭବ ସୁଦୃଢ଼ କରି ଦେଲେ, ତାହା ଫାଙ୍କି ଦେଇ ନୀରବତାରେ ଆତ୍ମପ୍ରକାଶ କରିବ ସେ । ରାଧାପ୍ରିୟା ବଡ଼ ମୁସ୍କିଲରେ ପଡ଼ିଲେ । ଏହିପରି କିଛିଦିନ ଗଲାପରେ ରାଧାପ୍ରିୟା କ୍ରମେ କ୍ରମେ ହଟିବାକୁ ଆରମ୍ଭ କଲେ । ନିଜ ପାଖରେ ତାଙ୍କର ପରାଜୟ ସ୍ପଷ୍ଟରୁ ସ୍ପଷ୍ଟତର ହେବାକୁ ଲାଗିଲା । କେତେବେଳେ ଔଦାର୍ଯ୍ୟର ଆକାରରେ କେତେବେଳେ ବା କ୍ରୋଧର ମୂର୍ତ୍ତି ଧରି ତାହା ଦେଖାଦେଲା । ସମୟ ସମୟରେ ଅକାରଣ ବିରକ୍ତିର ଲକ୍ଷଣ ସ୍ୱରୂପ ତାହା ପ୍ରକାଶ ପାଇଲା । ସୁନ୍ଦରର ପ୍ରସ୍ଥାନ ପରେ ରାଧାପ୍ରିୟାଙ୍କ ପାଇଁ ପାନଭଙ୍ଗି ଯଥାସମୟରେ ଯୋଗାଇବାର ଭାର ପଡ଼ିଲା ପୂର୍ବ ପରିଚାରିକା ସେବତୀ ଉପରେ । ପୂର୍ବରୁ ଏହି ବିଶିଷ୍ଟ କାର୍ଯ୍ୟର ଭାର ତାହାରି ଉପରେ ଥିଲା । ତାମ୍ବୁଲ ପରିବେଷଣ କିପରି କରିବାକୁ ହୁଏ, ତାହାର କୌଶଳ ତାକୁ ଯଥେଷ୍ଟ ବିଦିତ ଥିଲା । ଦିନେ ସେ ସ୍ୱୟଂ ମା-ଠାକୁରାଣୀଙ୍କଠାରୁ ଏ କାର୍ଯ୍ୟ ପାଇଁ ପ୍ରଶଂସା ଦାବି କରୁଥିଲା । ମା-ଠାକୁରାଣୀ ମଧ୍ୟ ତା ଉପରେ ପ୍ରଶଂସା ବର୍ଷଣ କରିବାକୁ ଦିନେ ପଶ୍ଚାତ୍ପଦ ହେଉ ନ ଥିଲେ । କିନ୍ତୁ ଆଜି ଆଉ ସେ ପ୍ରଶଂସା ସେବତୀ ଲାଭ କରିବାକୁ ସମର୍ଥ ହୁଏ ନାହିଁ । ପୂର୍ବ ଗୌରବରେ ପୁନଃ ପ୍ରତିଷ୍ଠିତ ହେବାପାଇଁ ପ୍ରାଣପଣ ଚେଷ୍ଟାକରେ, ଯଥାସମ୍ଭବ ମନୋନିବେଶ କରି ପାନଭଙ୍ଗି ରାଧାପ୍ରିୟାଙ୍କ ମନୋରଞ୍ଜନ କରିବାକୁ ଯତ୍ନକରେ । ମାତ୍ର ସେ ଦିନୁ କେବଳ

ଯନ୍ତ୍ରରେ ସମ୍ପାଦିତ ହୁଏ, ସିଦ୍ଧିଲାଭ ଘଟେ ନାହିଁ । ଅନେକ ସମୟରେ ସ୍ୱାମିପ୍ରିୟା ପାନମଞ୍ଚ ପାଖିରେ ଗୁଞ୍ଜିଦେଇ, ଥରେ ଦୁଇଥର ଚୋବାଇ ପକାଇ, ଥୁ ଥୁ କରି କାଢ଼ି ପକାନ୍ତି । ସେଦିନ ମତିବୁଦ୍ଧି ହୋଇଯାଏ । ହାୟ ହାୟ ! ତାର ଏତେ ଶ୍ରମସ୍ୱୀକାରର ପରିଣତି ହେଲା ଥୁ ଥୁ ! ବ୍ରାହ୍ମଣୀ ନାନୀ ଅତିଯତ୍ନ କରି ଦିବ୍ୟସୁନ୍ଦର ଅନ୍ନବ୍ୟଞ୍ଜନ ପ୍ରସ୍ତୁତ କରେ । ସ୍ୱାମିପ୍ରିୟାଙ୍କ ଭୃତ୍ୟକୁ ଯାହା ଯାହା ରୁଚେ ତାହା ନୂଆ ପଞ୍ଚଖାଟି କରି ସଜା ଆଣେ । ପାଖରେ ବସି ଖୁଆଇବାକୁ ଚେଷ୍ଟାକରେ । ମାତ୍ର ଭୁଞ୍ଜିବାଆଗରୁ ତାହା ସ୍ୱାମିପ୍ରିୟାଙ୍କ ଭୃତ୍ୟକୁ ଚୁରିକରି ନେଲା ବୋଲି ଜଣା ପଡେ ନାହିଁ । ନାନୀ କହେ—ମା-ଠାକୁରାଣୀ ବଡ଼ନବାସରେ କଣ ଭଲ ହୋଇ ନାହିଁ ? ଛେନା ଖୋଳଥାଳରେ କାହିଁତ ହାତ ବାଜୁ ନାହିଁ ? ସ୍ୱାମିପ୍ରିୟା କହନ୍ତି—"ହଁ ଗୋ, ବାଜିବ ନାହିଁ କାହିଁକି ? ଆଉ କେତେ ଖାଇବି ?" କିନ୍ତୁ ଏ କଥାରେ ବ୍ରାହ୍ମଣୀ ନାନୀର ମନବୋଧ ହୁଏ ନାହିଁ । ସେ ମୁହଁ ବଙ୍କା କରି ବସେ । ଗୃହଦେବତା ମଦନମୋହନଙ୍କ ପୂଜାରୁ ବାହାରିଥିବା ଫୁଲ ଚନ୍ଦନ ତୁଳସୀ ଓ ନିର୍ମାଲ୍ୟ ଆଣି ମା-ଠାକୁରାଣୀଙ୍କ ହାତରେ ଦେଇ କହେ—ମା, ଆଜି ସନ୍ଧ୍ୟା ଆରତିବେଳେ ନିଜେ ଦେଖିବାକୁ ଭୁଲିବେ ନାହିଁଟି । କିନ୍ତୁ ସ୍ୱାମିପ୍ରିୟା ଭୁଲିଯାନ୍ତି । ସନ୍ଧ୍ୟା ଆରତି ଶେଷହୁଏ, ଅଥଚ ମା ଠାକୁରାଣୀ ଉଠନ୍ତି ନାହିଁ । ପର୍ବପର୍ବାଣିବେଳେ ଘରେ କିପରି ଉତ୍ସବର ଅନୁଷ୍ଠାନ କରିବାକୁ ହେବ ସେ ବିଷୟରେ ପରାମର୍ଶ କରିବାପାଇଁ ଦାସ ଦାସୀମାନେ ଆସି ତାଙ୍କୁ ବ୍ୟସ୍ତ କରନ୍ତି, ସ୍ୱାମିପ୍ରିୟା ସେମାନଙ୍କ ଉପରେ ବିରକ୍ତି ପ୍ରକାଶ କରି କହନ୍ତି—"ତମର ବୁଦ୍ଧିଶୁଦ୍ଧି କଣ ଲୋପପାଇଛି ? ଥରକୁ ଥର ଆସି ମୋତେ ପଚାରୁଛ ? ଏତେ ଦିନହେଲା ଏ ଘରେ ରହିଲ, କେତେବେଳେ କଣ ହୁଏ ତା କଣ ଜାଣନାହିଁ ? ଦାସଦାସୀମାନେ ସ୍ୱାମିପ୍ରିୟାଙ୍କର

ଏ ଅସ୍ୱାଭାବିକ ବଦଳ ଦେଖି ଆଶ୍ଚର୍ଯ୍ୟ ହୁଅନ୍ତି । ସେଠି ଘରବୋହୂ ଆଠଦିନରେ ଥରେ ଆସି ମା-ସାଆନ୍ତାଣୀଙ୍କର ମଳିନବେଶ ଲକ୍ଷ୍ୟକରି କହେ—ପହରଣ ଖଣ୍ଡି ପାଲଟିଦେବାକୁ ହୁକୁମ ହେଉ ମା । ରାଧାପ୍ରିୟା ଉଦାସ କଣ୍ଠରେ କହନ୍ତି—"ଆଉ ଲୋ ନାକପୋଡ଼ିମା, ଆଉ ଦିନେ ନେବୁ, ଆଜି କିଏ ଦେଉଛି ।' ଜାଗିରଖିଆ ବନ୍ଧୁବାରିକର କଅଁଳ କନ୍ଧୀ ଘରଣୀ ଆସି ଗୋଡ଼ଧରି ଜିଦିକରି ବସେ—ଆସ ମା, ଆସ, ମୋ ରାଣୀଟି, ମୋ ମୁଣ୍ଡ ଖାଇବ, ନଖଗୁଡ଼ାକ ବଢ଼ିଗଲାଣି, ଥରେ ନହୁଣୀଟା ବୁଲେଇ ଦିଏଁ । ରାଧାପ୍ରିୟା କହନ୍ତି—ନା ଲୋ ବାରିକଘର ବୋହୂ, ତୁ ଆଜି ଯା ।

ଦିନକୁ ଦିନ ଏହିପରି କାର୍ଯ୍ୟରେ, ବାକ୍ୟରେ, ଆଚରଣରେ ରାଧାପ୍ରିୟାଙ୍କର ଔଦାସୀନ୍ୟ ଫୁଟି ଉଠୁଥିଲା । ସବୁ ବିଷୟରେ ଗୋଟାଏ ନିର୍ଲିପ୍ତଭାବ ପରିଲକ୍ଷିତ ହେଉଥିଲା । ଯେ ପ୍ରକାରେ ହେଉ ଦିନକେତୋଟା କଟିଗଲେ ହେଲା । ଜୀବନର ସ୍ରୋତଟା ଯେବେ ଶୁଖିଗଲେ ହେଲା, ଏହିପରି ଗୋଟାଏ ବୈରାଗ୍ୟର ଲକ୍ଷଣ ଦେଖା-ଯାଉଥିଲା । ସମସ୍ତେ ଏହା ସ୍ପଷ୍ଟଭାବରେ ଲକ୍ଷ୍ୟ କରୁଥିଲେ । ଏହି ବିଷୟଟା ନେଇ ନାନାପ୍ରକାର ଆଲୋଚନା ଚାଲିଥିଲା । ଦାସ ଦାସୀମାନେ ନାନା ଟୀକା ଟିପ୍ପଣୀ ପ୍ରକାଶ କରୁଥିଲେ । କେହି କୃଷ୍ଣମାଧବଙ୍କୁ ଦୋଷ ଦେଉଥିଲା, କେହିବା ହରଶଙ୍କରଙ୍କୁ, ଆଉ କେହିବା ସୁନ୍ଦମାଳୁ ଦୋଷୀ ସାବ୍ୟସ୍ତ କରୁଥିଲା । ଦିବ୍ୟଦାସ ବୁଢ଼ା ମୁଣ୍ଡ ହଲେଇ କହୁଥିଲା—ସାଆନ୍ତେ ଭାରି ଗୁଣବନ୍ତ ଲୋକ ହିଁ, ହେଲେ କଣ ହେବ, ଟିକିଏ ଅଖାଡ଼ୁ ପ୍ରକୃତିର । ଯାହା କଉଁକାଳେ ଦେଖାନାହିଁ କି ଶୁଣା ନାହିଁ, ତା କରିବାକୁ ଯିବାଟା ପିଲାଳିଆ କଥା । ବଡ଼ ଗୁମାସ୍ତାଏ କହନ୍ତି—"ବଡ଼ ଖରାପ କଥାଟା ହେଲା । ମାମୁ ସାଆନ୍ତେ ଟିକିଏ ସମ୍ଭାଳିଯାଇ ଭଲ କଥାରେ ବାବୁ ସାହେବଙ୍କୁ

ବୁଝାଇ ଦେଇଥିଲେ ହୋଇଥାନ୍ତା,—ହଠାତ୍ ପଞ୍ଚମ ହୋଇଗଲେ । ବାବୁ ଅଭିମାନୀ ଲୋକ, ଅଭିମାନ ଧରି ବସିଲେ । ସେହି ନିଅଣ୍ଡି ଝିଅଟିର କପାଳ ଫାଟିଲା । ଆହା ବଡ଼ ଗୁଣବତୀ ଝିଅଟି, ଯାହାକୁ କହନ୍ତି ଅନ୍ନପୂର୍ଣ୍ଣା । କୀର୍ତ୍ତିନଅ କହେ—"ଟେପଟେପାଟେଣା କଥା ବୁଝିବାକୁ ଲୋକଟା ଥିଲା ଏକା ! ଏଥରୁ ଲକ୍ଷ୍ମୀପ୍ରତିମା ଚାଲିଗଲା । କେତେଟା ଦିନରେ ସେ ଲୋକଙ୍କୁ କି ଆପଣାର କରି ପକାଇଥିଲା । ସେ ଦିନ ଦୈବକୁ ମୁଁ ନ ଥିଲି, ନୋହିଲେ କି ସହଜରେ ଛାଡ଼ ଦେଇଥାନ୍ତି ? ଦଜଣଙ୍କ ଗୋଡ଼ ଭିଡ଼ିଧରି ଲମ୍ବହୋଇ ପଡ଼ିଯାଇଥାନ୍ତି —କହିଥାନ୍ତି,—ଯିବ ଯଦି ଏହି କୀର୍ତ୍ତିନଆ ଉପରେ ଚଢ଼ିକରି ଯାଅ । ସେତିକି ବୁଦ୍ଧି ତ କାହାରିକୁ ଦିଶିଲା ନାହିଁ ।" ହରିଆମା ପୋଇଲା ଭୁଣି ଭୁଣି କହେ—'ଝିଅଟାର ସବୁଗୁଣ ଭଲ ହଁ, ହେଲେ ଅଟପଣ୍ଠ ଦେଖିପାରେ ନାହିଁ । ମୁଁ କହେଁ—ସେ ତ ଜଗାଧର ପୁଅ, ତୁ ତ ଗରିବ ଘର ଝିଅ, ବଡ଼ଲୋକ ପୁଅ ସାଙ୍ଗରେ ପାରିବୁ କିଆଁ ? ସବୁ କଥା ସେଇଠି ରହିଛି ନା ! ମୂଳରୁ ସେତିକି ଜିଦ ନ କରି ଥାନ୍ତୁ, ପାଣି ପଶିବାକୁ ଦେଇ ନ ଥାନ୍ତୁ, ତେବେ ଏତେ କଥା କ୍ୟାଁ ହୋଇଥାନ୍ତା ।'

କେହି କେହି ବିଶେଷ ବିଜ୍ଞତା ପ୍ରକଟ କରି ମନ୍ତବ୍ୟ ଦିଅନ୍ତି, —'ମା-ଠାକୁରାଣୀଙ୍କର ଟିକିଏ ଭୁଲ ହେଲା । ସେ ଧାରକୁଅଁ ଦେଲେ ନାହିଁ, ସାପକୁ ମରି ବୋଲି କହିଲେ ନାହିଁ କି ବାଡ଼ିକୁ ଭାଙ୍ଗ ବୋଲି କହିଲେ ନାହିଁ । ସବୁ କଥାରେ ଚୁପ୍ ମାରିଗଲେ । ଆଗୁ ସମସ୍ତଙ୍କୁ ବୁଝାଇ ସମଝାଇ ଝିଅଟିକୁ ଗୋଟିଏ ପାନ ଦେଖି ଉଠେଇ ଦେଇଥିଲେ ତ କଥା ସରିଥାନ୍ତା ।' କେହି ଏହା ଶୁଣି ଯୁକ୍ତି କରି ଦିଅନ୍ତି—ଏତେ କଥାକୁ ସମୟ ହେଲା କାହିଁ ? ଅନ୍ୟ କେହି ତାର ଜବାବ ଦିଅନ୍ତି—ସମୟର କଥା ତ ନୁହେଁ, ସେ ଦିଗରେ ତାଙ୍କର ଚେଷ୍ଟା ହିଁ ହେଲା ନାହିଁ ।

